# ଯୌତୁକ ।

ଶ୍ରୀ ଭିକାରିଚରଣ ପଟ୍ଟନାୟକ ।

# ଯୌତୁକ ।

( ପ୍ରହସନ )

ଶ୍ରୀ ଭିକାରିଚରଣ ପଟ୍ଟନାୟକଙ୍କ
ପ୍ରଣୀତ ଓ ପ୍ରକାଶିତ ।

( କଟକ ଷ୍ଟାର କ୍ଲବଦ୍ୱାରା
ପ୍ରଥମ ଅଭିନୀତ । )

ପ୍ରଥମ ସଂସ୍କରଣ ।

Printed by H. K. Das,
Chandrodaya Press,
Cuttack.
1924.

୧୯୮୦

ପରିବର୍ତ୍ତିତ ମୂଲ୍ୟ
Rs 2 – [illegible]

# ନାଟ୍ୟୋଲ୍ଲିଖିତ ବ୍ୟକ୍ତିଗଣ ।

## ପୁରୁଷ ।

୧ । ପଦ୍ମନାଭ—ଶିକ୍ଷିତ ଯୁବକ ।

୨ । ମଧୁସୂଦନ ପଟ୍ଟନାୟକ—ପଦ୍ମନାଭଙ୍କ ପିତା ।

୩ । ନରହରି, ଶ୍ରୀରାମ, ଗୁରୁଚରଣ—ପଦ୍ମନାଭଙ୍କର ବନ୍ଧୁଗଣ ।

୪ । ପ୍ରାଣକୃଷ୍ଣ ଓ ରଘୁନାଥ—ମଧୁସୂଦନଙ୍କର ବନ୍ଧୁଦ୍ୱୟ ।

୫ । ଦୀନବନ୍ଧୁ ଚୌଧୁରୀ—କନ୍ୟାକର୍ତ୍ତା ।

୬ । ରତ୍ନାକର ଓ ପ୍ରଭାକର—ଦୀନବନ୍ଧୁ ଚୌଧୁରୀଙ୍କ ବନ୍ଧୁଦ୍ୱୟ ।

୭ । ଶ୍ରୀଧର ଦାସ, ମକୁନ୍ଦ ଦାସ ଓ କହ୍ନେଇ ଦାସ—ତିନିଜଣ ମଧ୍ୟସ୍ଥ ।

୮ । ଚନ୍ଦ୍ରମଣି ବାରିକ—ଗ୍ରାମ୍ୟ ବାରିକ ।

ବରଯାତ୍ରିଗଣ, ପୁରୋହିତ, ଜ୍ୟୋତିଷ, ଗାୟକ, ବନ୍ଧୁବାନ୍ଧବଗଣ, ଗାନ୍ଧିକ ଓ ଅନ୍ୟପୁରୁଷଗଣ ।

## ସ୍ତ୍ରୀ ।

୧ । ପବିତ୍ରା—ପଦ୍ମନାଭଙ୍କ ମାତା ।

୨ । ରମା—ମଧୁସୂଦନଙ୍କ ଭଗ୍ନୀ ।

୩ । କୁନ୍ଦ—ମଧୁସୂଦନଙ୍କ ଗୃହର ଦାସୀ ।

୪ । ନିର୍ମଳାବାଳା—ଶିକ୍ଷିତା ଯୁବତୀ ।

୫ । ପ୍ରମିଳା, ଶଶିକଳା, ଚାରୁଶୀଳା, ଓ ବସନ୍ତବାଳା—ନିର୍ମଳାବାଳାଙ୍କ ବନ୍ଧୁଗଣ ।

୬ । ରାଧୀ—ନିର୍ମଳାବାଳାଙ୍କ ଗୃହର ଦାସୀ ।

ବାଳିକାଗଣ, କନ୍ୟା, ବାଲକାଗଣ, ଅନ୍ୟରମଣୀଗଣ, ନର୍ତ୍ତକୀଗଣ ଓ ଅନ୍ୟାନ୍ୟ ସ୍ତ୍ରୀଗଣ ।

# ଯୌତୁକ ।

## ପ୍ରଥମ ଅଭିନୟ ।

### ୧ମ ଦୃଶ୍ୟ ।

( ପଟ୍ଟନାୟକଙ୍କ ଚଉପାଢ଼ୀ । )

( ଚନ୍ଦ୍ରମଣି ବାରିକର ପ୍ରବେଶ )

ଗୀତ ।

ବୋଲ ହରେ ରାମ ଭାଇ ବୋଲ ହରେ ରାମ
ଦୁନିଆରୁ ଉଠିଯାଉ ବଶ ପାଧ୍ୱ ନାମ ।
ବନ୍ଦେ ପାଣି ଉଛାଣି
ଜକଗାଲେ ନଟ୍ଟ ଖାଇ ଖୁନ୍ଦା ଚଟକଣି
ପୁଅକୁ ଝିଅ ଝିଅକୁ ପୁଅ ଆଉ ନପଟି
ଝିଅକୁ ଝିଅ ଚଳାଇଦିଅ, ବର ତ ବହୁତ ଦାମ,
ବର ତ ବହୁତ ଦାମ, ବର ତ ବହୁତ ଦାମ ।

(ମଧୁସୂଦନ ପଟ୍ଟନାୟକ ଓ ରଘୁନାଥ ଏବଂ ପ୍ରାଣକୃଷ୍ଣଙ୍କର ପ୍ରବେଶ)

ଚନ୍ଦ୍ର—ମୋ ସାଆନ୍ତେ ତ ଆଇଲେଣି (ପୁନଃ ପୁନଃ ଅଭିବାଦନ କରି) ଯୁହାର, ଯୁହାର, ସାଆନ୍ତେ ଯୁହାର ।

ମଧୁ—କିରେ ଚନ୍ଦର, ତୁ ସବୁ ସଜିଲ ସାଜିଲ କରି ସାରିଲୁଣି ? ପିଉକାଠଅ ସବୁ ପହଞ୍ଚିବେ ସବା ? ଦୁଇ ଗୃହଖଣ୍ଡ ସତରଞ୍ଜି ଅଞ୍ଚ ଦୁଇ ଚନଖଣ୍ଡ କମ୍ବଳ କୋଉଠି କାହା ଘରି ଥିବ ଖୋଜ ଖାଜ ଅଣ ।

ଚନ୍ଦ୍ର – ଆଜ୍ଞା, ଆଜ୍ଞା ସାଆନ୍ତେ ସେଥିଲାଗି ସାଆନ୍ତେ ଆପଣ ଭାବନା କରିବେ ନାହିଁ । ସାଆନ୍ତଙ୍କ ପୁଅଙ୍କର ବାହାଘର ହବ, ଆଜ୍ଞା

ପିଉକାଉଥିଙ୍କ ଲାଗି କରୁଣା ଦଂ ଗୃହ ଗଣ୍ଡ ଅଞ୍ଜା ଚନ୍ଦ୍ରମଣି
ତା'ପଛୁ ଅଣି ପଠେଇଦବ ।

ମଧୁ—ଅରେ ନୋହୁଲେ କରେ ଚନ୍ଦ୍ର ! ବେସ !, ବେସ, ସାବାସ ସାବାସ ! ବୁଝିଲନା ରଘୁନାଥ ଖଇ, ଚନ୍ଦ୍ରମଣି ଭଲ ବାହକ ଅଉ ଦୁନିଅରେ କେହି ନ ଥିବ ।

ଚନ୍ଦ୍ର—ଅଜ୍ଞା, ସବୁ ସାଅନ୍ତଙ୍କ କଲ୍ୟାଣରୁ । ସାଅନ୍ତଙ୍କର ମୁଁ ତନା ପୁରୁଷର ଚାକର । ସାଅନ୍ତଙ୍କ ଗୁଣ ମୁଁ ମରିଗଲେ ବି ପାସୋରି ପାରିବି ନାହିଁ । ସାଅନ୍ତଙ୍କ ଯୋଗେ ମୋର ବଳବାଡ ହଳ ବଳଦ ସବୁ । ସାଅନ୍ତେ ମୁଁ ଦୁହେଁଯାକ ବର୍ଷବର ସାଙ୍ଗ ହୋଇ ହଳ ଯେନ ବିଲକୁ ଯାଉଁ । ସାଅନ୍ତେ ଅଗେରେ କାମ ସାରି-ଦେଇ ମୋ ବିଲରେ ବି ଅଗ୍ନ ଅଗ୍ନ ନ ବୁଲେଇଲେ କେବେ ତାଙ୍କ ମନ ବୋଧ ହୁଏନା । ସାଅନ୍ତଙ୍କ ଗୁଣ ଅଉ କ'ଣ ବାଖାଣିବି, ସବୁ ସମ୍ପଦ ମୋର ସାଅନ୍ତଙ୍କ ଯୋଗେ ।

ମଧୁ—ଅରେ ହେଃ ହେଃ ସେଗୁଡ଼ାକ ଚନ୍ଦ୍ର କାହିଁକି କହୁଚୁ ।

ଚନ୍ଦ୍ର—ସାଅନ୍ତେ ସେଗୁଡ଼ାକ କହିବିନାହିଁ ! ନକହିଲେ ମୋ ମୂର୍ଦ୍ଧନା ଫାଟିଯିବ । ସେ କଥା ତ ମୁଁ ଚିରଦିନ ଗାଉଥିବି । ବାପ ମୋର ଜମିଦାର ଲି ତିନଗୁଣ୍ଠ ରଖି ଯାଇଥିଲା । ସାଅନ୍ତଙ୍କ କଲ୍ୟାଣରୁ ମୁଁ କୋଉବରଷ ଦୁଇଗୁଣ୍ଠ କୋଉବରଷ ଚାରିଗୁଣ୍ଠ କୋଉବରଷ ପାଏ କୋଉବରଷ ଦୁଇପା-ଏମିତି ଏମିତରେ ଏଇକ୍ଷଣି ଜମି-ବାଡ଼ ୧୦ ମାଣ ପାଏ କଲିଣି, ମୋର ସବୁ ବଢ଼ନ୍ତି ସାଅନ୍ତଙ୍କ ସାଙ୍ଗେ ସାଙ୍ଗେ । ସାଅନ୍ତଙ୍କର ବି ଅଗେ ତ୍ରିଲକ୍ଷ ଗାଉଣୀ ପଚିଶ ଗାଉଣୀ ଦେଢ଼ି ହଉଥିଲା । ମୋରି ଯୋଗରୁ ସାଅନ୍ତଙ୍କର ଏଇକ୍ଷଣି ବାଡ଼ିବଢ଼ି ପାଞ୍ଚଭରଣ ବାଇଶ କୋଡ଼ି ପାଏ ଦେଢ଼ି ହେଲଣି ପୁଣି ଦେଢ଼ିରି ତ ସୁଧ ଗଡ଼ୁଚି ବଢ଼ୁଚି ନେ କେ ଜାଣି କେତେଯାଏ ହବ ।

ମଧୁ—( ସ୍ୱଗତ ) ଓଃ ସାଇଲି ବର୍ତ୍ତ । ( ପ୍ରକାଶ୍ୟ ) ଅରେ ଚନ୍ଦର
ସେଗୁଡ଼ାକ ଏଇକ୍ଷିଣେ କାହିଁକି କହୁଚୁ ।

ଚନ୍ଦ୍ର—ଆଜ୍ଞା କହିବ ନାହିଁ ? ଆପଣ ମୋର ମୁନିବ, ଆପଣଙ୍କ ଗୁଣ
ନ ଗାଇବ ତ ଆଉ କାହା ଗୁଣ ଗାଇବ । ଆପଣଙ୍କ ବଢ଼ନ୍ତିକି
ମୋ ବଢ଼ନ୍ତି । ମୁଁ ଗୁଣ୍ଡିଆ ଥିଲି ଅପଣଙ୍କ କଲ୍ୟାଣରୁ ଚନ୍ଦରା
ହେଲି, ଫେର ଏଣିକି ଚନ୍ଦ୍ରମଣି ବାବୁକ ହେଲିଣି । ଆପଣ
ମଧୁ ନାଏକ ଥିଲେ, ମଧୁସୂଦନ ନାଏକ ହେଲେ, ଫେର
ଏଇକ୍ଷିଣେ ମଧୁସୂଦନ ପଟ୍ଟନାୟକ ହେଲେ । ମୋ ଉପରେ
ଆପଣଙ୍କର ଯେମିତ ସୁଦୟା ଅଛି ବୋଲି ଆପଣଙ୍କର
ପାହାରେକୁ ମୋର ପାହାରେ ବରାବର ଲାଗିରହିଛି ନା । ଆପଣଙ୍କ
ଗୁଣ ମୁଁ ଫେର ନୂଆରେଇ ରଖିବ କୋଉଠି, ଛାତ ଫାଟିଯିବ ।

ମଧୁ—ଆଚ୍ଛା ହଉ ହଉ, ହେଇ ମଧ୍ୟସ୍ଥ ଆଇଲେଣି ।

(ମଧ୍ୟସ୍ଥ ଶ୍ରୀଧର ଦାସଙ୍କର ପ୍ରବେଶ ଓ ଅଭିବାଦନ)

କ ମଧ୍ୟସ୍ଥେ ! ଅଜ୍ଞ ସିଉକାର ଆସିଛି କି ?

ଶ୍ରୀଧର—ଆଜ୍ଞା ହିଁ କାହିଁକି ନ ଆସିବ । ଖାଲି ଆପଣଙ୍କ ଅନୁମତି
ହେଲେ ତ ହେଲା ।

ମଧୁ—କଣ ହେଲା ଫେର ? ନଗଦ ଦଶହଜାର, ସୁନାର ସାଜେ,
ରୁପାର ସାଜେ, ସାଇକଲ ଗୋଟାଏ, ଘୋଡ଼ା ଗୋଟାଏ, ଆଉ
ପାଲିଙ୍କି ଗୋଟାଏ, ଏଥିରେ ରାଜି ତ ?

ଶ୍ରୀଧର—ଆଜ୍ଞା ସବୁଥିରେ ରାଜି, କେବଳ ସେହି ଦଶ ହଜାର କଥାଟି
ଅଲୁଅ ପଡୁଚି, କହନ୍ତି ଦୁଇ ହଜାରଟି ଦେବେ ଆଉ ପାରିବେ
ନାହିଁ ।

ମଧୁ—ଯା, ଯା, ଯା, ବଡ଼ା ହୁଅ ବଡ଼ା ହୁଅ ।

ଶ୍ରୀଧର—ଆଜ୍ଞା ।

ମଧୁ—ଅରେ ଯାହୋ, ଅଜ୍ଞା ଅଜ୍ଞା କଥା ପଛେ କହିବ । ଚନ୍ଦ୍ରମଣି !

ଅଙ୍କୁ ଶବା କର, ଅଗେ ବଡା କର । ପିଣ୍ଡାରେ ସୁନ୍ଦରଙ୍ଗା ମଧ୍ୟସ୍ଥ ବସିଛନ୍ତି ପଛ, ତାଙ୍କୁ ଡାକଅଣ ।

ଚନ୍ଦ୍ର—ଯା ଯା ମଧ୍ୟସ୍ଥେ, ଥିର ହୋଇଁ ଚାଲି ଯା ।

ଶ୍ରୀଧର—ଅଜ୍ଞା—

ଚନ୍ଦ୍ର—ଗ୍ରେପ୍ ଗ୍ରେପ୍ ଅଜ ପାଠି କରନା ( ପୃଷ୍ଠରେ ହସ୍ତନବେଶ ଓ ଉଭୟଙ୍କର ପ୍ରସ୍ଥାନ୍ ) ।

ମଧ—ଶୁଣୁଚନା ତାଙ୍କ ଶଚାର । ପାଞ୍ଚ ହଜାରକୁ କମେଇ କମେଇ ଅଣି ଚନ ହଜାର ହେଲା, ତେବେ ବ ସେଥିରେ ଓଜର; ପୁଅକୁ ପଢ଼େଇ ଗୁଣେଇ ଚନଚନଟା ପାର ଚାରଟା ପାସ କରେଇଲ, ଏବେ ବସିଛନ୍ତି ମୋପଚରେ ଗୋଟା ଜୋଇଁ କରନେବେ; ମାହାଲ୍ଲଅ ପଢ଼ଚ—ଅଜ୍ କ'ଣ ।

ପ୍ରାଣ—ମାଗଣା ଖାଇବାକୁ ସମସ୍ତେ ଖୋଜନ୍ତି ।

ରଘୁ—ଅଜ୍ କ'ଣ ହେ । ପୁଅଟିଏ ଜନ୍ମ କରବା ଯେ କ ମିହନ୍ତ, ପୁଣି ତାକୁ ପଢ଼େଇବା ଗୁଣେଇବା ଯେ କ ମିହନ୍ତ, ସେ କଥା ଯେ ପୁଅ ଜନ୍ମ କରଚ ସେ ସିନା ବୁଝିବ, ଝୁଅ ଜନ୍ମ କଲ ବାଲ ତା କୋଉଠୁ ବୁଝିବେ ।

( ୨ୟ ମଧ୍ୟସ୍ଥ ମକୁନ୍ଦ ଦାସ ଓ ଚନ୍ଦ୍ରମଣି ବାଇକର ପ୍ରବେଶ )

ମଧୁ—କ ମଧ୍ୟସ୍ଥେ କଣ ବୁଝିଲ ଠିକେ ଠିକେ କହଯାଅ—ସୁନା ଓ ରୁପାର ଦୁଇଟି ସାଜ, ହଉଚ ?

ମକୁ—ହଁ ଦୁଇ ସାଜ କ'ଣ କହୁଛନ୍ତି, ଦେଖିବେ ନାହିଁ ।

ମଧୁ—ଗ୍ରସ୍ତାଖରଚ ଚନହଜାର, ହଉଚ ?

ମକୁ—ଚନ ହଜାର ଚନ ହଜାର କାହିଁକି ହଉଚନ୍ତି ଯାହା ମିଳବ ଅପେ ବୁଝିବେ । ମୋ ବନ୍ଧାଙ୍କରେ ଏକା ତ୍ରୁଟି କରବେ ନାହିଁ; ହଁ, ଏତକ ବେଳରୁ କହ ଦଉଚ ।

ଚନ୍ଦ୍ର—ମଧ୍ୟସ୍ଥେ । ତୁମେ ଅମ ସାଅନ୍ତଙ୍କୁ ଚହି ପାରୁନାହିଁ । ତୁମେ

ତାଙ୍କ କଥା ଜାଣିନା । ସେ ଯେବେ ଦେଇ ବସିବେ ତ ଅଉ କହିବାକୁ ଥିବ ନାହିଁ । ମୋର ଜନମରୁ ଏ ଘରେ ସେବା, ଭାଲ୍ ନଖାଇ ନପୀଇ ମୁ ବଢ଼ିଛୁ । ଟୋପା ଚୋବଣିରେ ପାଅନ୍ତ-ଙ୍କର ଧାରୁଅ ହୋଇ ନାହିଁ । ଖାଇଲା ପୀଇଲା ବେଳ ହେଲା ତ ପାଅନ୍ତାଣୀ କବାଟ କିଲିଦେଇ ପାଅନ୍ତଙ୍କ ଲାଗି ପିଣ୍ଡାରେ ଚୋବଣି ବାଢ଼ନ୍ତ । ତାଙ୍କ କଥା କହିଲେ ସରିବ ନାହିଁ, ତୁମେ ଅଗେ ପାଅନ୍ତଙ୍କ ମନ ନେଇ କାମ କରି ପାର, ଦେଲାନେଲା ବେଳକୁ ତୁମେ ଅଛ କି ମୁଁ ଅଛୁ ।

ମଧୂ—ତେବେ କ'ଣ ପିଉକାର ଅଢ଼ ଅସିବ ?

ମକୁ—ଅଢ଼ ଫେର କେମିତ ହବ । ଏଇ ତ ଅପଣଙ୍କ ଯବାବ ପାଇଲି । ମୁଁ ଫେର ଯାଇ କହିବି, ଦିନ ବାର ଧସ ଯିବ, ପିଉକାର ଅସିବ କି !

ମଧୂ—ତେବେ ଅମକୁ ହଜାର ଟଙ୍କାଟି ବଇନା ଦେଇ ଯାଅ ।

ମକୁ—ବଡ଼ ଚଲ୍ତା ନାହିଁ, ଯାଉଚ ସେଇ କଥା କହିବ ।

ମଧୂ—ଶୀଘ୍ର ଯାଅ, ତା ନ ହେଲେ ଅମେ ଅନ୍ୟ ଚେଷ୍ଟା କରିବୁଁ ।

( ସମସ୍ତଙ୍କର ପ୍ରସ୍ଥାନ )

———※———

## ୨ୟ ଦୃଶ୍ୟ ।

କକ୍ଷ ।

( ପଦ୍ମନାଭ, ନରହର, ଶ୍ରୀରାମ, ଗୁରୁଚରଣ ପ୍ରଭୃତ ବନ୍ଧୁଗଣଙ୍କର ପ୍ରବେଶ )

ନର—well ପଦ୍ମନାଭ । ତୁମର father ତ କ'ଣ ଏପରି ଗୋଟାଏ ଯବାବ ଦେଇ ପାରିଲେଣି । ଏବେ ହେବ କ'ଣ?

ପଦ୍ମ—Dam care for such ଯବାବ ।

ଶ୍ରୀରାମ—Quite so. ଭଏ ଗୋଟା କଥା, ଯେ ବାପ ହେବ

ତାର without consent ରେ ବାପା ଗୋଟା ସବାବ ଦେଲେ ହୋଇଯିବ । By no means. ସେଟା ବାପାଙ୍କର foolishness. ତାର consequence ବାପା ଭୋଗିବେ, ପଦ୍ମନାଭ କ'ଣ କରିବ ।

ଗୁରୁ—ନିଶ୍ଚୟ । ପଦ୍ମନାଭ କ'ଣ ପଶ୍ନ ହୋଇଛ, ବାପା ଯାହା କହି-ଦେବେ ସେ ସେଇଆ accept କରିନେବ । ବାପାଙ୍କର ଏତିକ ଟିକେ common sense ନାହିଁ ଯେ ବାହା ତ ହେବ ପଦ୍ମନାଭ, ସେ ଲୋକର wife ଗୃହେଁ ତାଙ୍କୁ ଟିକେ ପଚ୍ଚାର ଦେଁ ।

ପଦ୍ମ—I must select my own wife ବାପାଙ୍କ କଥାରେ ମୁଁ ଭୁଲିବାକୁ ଯାଉନାହିଁ । ବାପା has no ଅକ୍ତିଆର in this matter.

ନାର—ବଡ଼ ଲଜ୍ଜାର କଥା । ବୁଢ଼ା ଗୁଡ଼ାକ ସବୁବେଳେ ବେକୁବ୍ ! ସମାଜଟାକୁ ଏଇ ବୁଢ଼ାଗୁଡ଼ାକ ମିଳି ନଷ୍ଟ କରି ଦେଲେ । ବୁଢ଼ାଗୁଡ଼ାକ ବଦାୟ ନ ହେବାପର୍ଯ୍ୟନ୍ତ ସମାଜ କଦାପି ବାଟକୁ ଆସିବ ନାହିଁ । ବୃଦ୍ଧାଶ୍ରେଣୀ ସମ୍ପୂର୍ଣ୍ଣରୂପେ ଲୋପ ନ ହେବାଯାଏ ସମାଜର କୌଣସି ମଙ୍ଗଳ ସାଧନ ହୋଇପାରିବ ନାହିଁ ।

ଗୁରୁ—ଶୀଘ୍ର ଗୋଟାଏ associsation start କରି for the present ଏ ବୁଢ଼ାଗୁଡ଼ାଙ୍କ ମୁହଁରେ ଚୁଣ୍ଡି ବାନ୍ଧିବାକୁ ଗୋଟାଏ resolution କରି ନ ଦେଲେ ଆଉ ଚଳିହେବ ନାହିଁ ।

ଶୀବମ—ଆଉ ଗୋଟାଏ definite resolution ଦରକାର ଯେ educated son ମାନଙ୍କ କାର୍ଯ୍ୟରେ uneducated ବାପା's can't interfere.

ପଦ୍ମ— ଖୁବ ଦରକାର, ଖୁବ ଦରକାର । Such a resolution

immediately necessary. ନ୍ୟାୟ୍ୟ ଅନ୍ୟାୟ୍ୟ ବସ୍ତୁର ନିର୍ଦ୍ଧାରଣ ସେମାନଙ୍କର ଅବଶ୍ୟ intelligence ନାହିଁ । କେବଳ interfere, interfere. interfere.

ବେହାଗ—ଏକତାଳା ।

ଗୀତ

ନ୍ୟାୟ୍ୟ ଯୁଗକୁ ଗର୍ଜିବା
କିବା ବାଧା କଥାରେ ରହିବା,
ବିଷମ ସମସ୍ୟା ପଡ଼ିଛୁ ଏବେ
କେଉଁ କଥାଟି କହିବା ।
ବାପା ବୁଝି ଆମ ବୁଝି
ଦୁଇ ବୁଝି ମାପିବା,
ଯେଉଁ ବୁଝି ଶ୍ରେଷ୍ଠ ହେବ
ସେହି ବୁଝିକୁ ଥାପିବା ।
ନ୍ୟାୟ୍ୟ ଯୁକ୍ତି ସିଧା ଉକ୍ତି
ପଢ଼ିଲେ ଶୁଝାଇବା,
ତେବେ ଯେବେ ନ ଶୁଣିବେ
ବାପାପଣରୁ କାଟିବା ।
ଯେବେ ଥିଲେ ପିତା ପୂଜ୍ୟ
ସେ କାଳକୁ ଭୁଲିବା,
ଏ କାଳକୁ ଜ୍ଞାନ ଶକ୍ତି
ସବୁ ଅଗେ ବୁଝିବା ।
ଜନ୍ମଦାତା ବୋଲି ଦାବି
ଅମୂଳକ ଜାଣିବା,
ପାଳନାର ବାପ ସତ୍ୟ
ସେ ସେଠିକ ଛୁଇଁବା ।

ଶ୍ରୀରାମ—ପଦ୍ମନାଭର ପିତାଙ୍କର ନଜରଟା କେବଳ ଟଙ୍କା ଉପରେ ।
Lady ର enlightenment ପ୍ରତି ଆଦଉ ଲକ୍ଷ୍ୟ ନାହିଁ ।
ପଦ୍ମ—Foolishness, foolishness. seer foolishness.
ନର— ବୁଢ଼ାକୁ ଅଛକର ପଟାଏ ଶିକ୍ଷା ଦେବାକୁ ହେବ । ମୁଁ ତାର ବ୍ୟବସ୍ଥା କରି ରଖିଲିଣି । He must be taught a good lesson.
ଶୁରୁ—ପଦ୍ମନାଭର bride ପଦ୍ମନାଭ କୋଉଦିନୁ select କରି ସାରିଲଣି । କେବଳ ବୁଢ଼ାଯୋଗୁରୁ marriage ଟା ହୋଇପାରୁ ନାହିଁ । କଥାଟା ଉଠିଲାଣି ଯେତେବେଳେ ଆଉ ଅଟକିବ ନାହିଁ, ତଥାପି ବୁଢ଼ାର ମୁହଁଟା ବନ୍ଦ କରିବାକୁ ଗୋଟାଏ ପ୍ରତିକାର କରି ରଖିଲେ ଭଲ ହେବ।
ଶ୍ରୀରାମ—ଦେଖ ସମାଜରେ ଗୋଟାଏ ଗଣ୍ଡଗୋଳ ଯେପରି ହୋଇ ନ ଉଠେ ।
ପଦ୍ମ—Dam care your ସମାଜ ।

(ଦୁଇ ପାର୍ଶ୍ୱରୁ ଦୁଇଜଣ ସମାଜ ସଂସ୍କାରକଙ୍କର
ପ୍ରବେଶ ଏବଂ ନୃତ୍ୟ ଓ )

ଗୀତ

କଲ୍ୟାଣ—ଦାଦରା ।

ସମାଜକୁ କ ଡର ।
ବିଧବାଙ୍କୁ ଦେବା ପତି,
ସଧବାଙ୍କୁ ସ୍ୱେଚ୍ଛା ଗତି
ଛାଡ଼ ଦେବା ଏଥର ।
ଏ. ବି. ପି. ଡ. ପାଠ ଶିକ୍ଷି ସଭ୍ୟ ହେଲୁଣି ଏଣିକି
ମାତା ଭଗ୍ନୀଙ୍କ ମୁଣ୍ଡରୁ ଓଢ଼ଣା
ଫିଟାଇବା ସତ୍ୱର ।

ଏଣ୍ଟ୍ରେଲ୍ସେଣ୍ଟ୍ ଲେଡ୍ ଖୋଜ  କହୁଥିବ ଯେ ଇଂରଜୀ
ପଢ଼ି କରିବା ମିଷ୍ଟାର ମିସେସ୍
ହୋଇ ଦେବା ଚକ୍କର ।
ଜାତଭେଦକୁ ନ ଗୃହ୍ନି  ଖାନା ରଖିବ ସଜାଇ
କରିମ ରହିମ ବୁଝିବ ସମାଜ
ବାହାଦୂରୀ ଅମ୍ଭର ।
( ସମସ୍ତଙ୍କର ପ୍ରସ୍ଥାନ )

—୦✿୦—

## ୩ୟ ଦୃଶ୍ୟ ।

### ଅନ୍ତଃପୁର ।

(ପଦ୍ମଲତା ଓ ରମାର ପ୍ରବେଶ)

ପଦ୍ମ—ପକ୍ଷି ଗୁଡ଼ାକ ଶୁଖେଇଥିଲି ଷେଣ୍ଟା ସବୁ କୁଦେଇ ପକେଇ ଗଲାଣି। ମୁଁ ବେସ୍ତ ହେଇଁ ହେଇଁ ମଲିଣି। ମୋ ପଦୁକୁ କେମିତି ହାତକ ବହାତ କରି ପକେଇଲେ ଟିକିଏ ନିଶ୍ୱାସ ମାରନ୍ତି।

ରମା—( ସ୍ୱଗତ ) ସ୍ୱଜନ ବୋଉ ମୋର ମନେ ମନେ କଷ୍ଟେ ଉଣ୍ଣ୍ଡା ଲାଗୁଛି। ପଦ ବାହା ହବ, ବୋହୁ ଆସିବ, କାମ ଦାମ କରିବ, ସ୍ୱଜନ ବୋଉ ମୋର ହାଉଆ ଖାଇବ ବସି। ମଜା ବୁଝି ନାହିଁ। ( ପ୍ରକାଶ୍ୟ ) ସ୍ୱଜନ ବୋଉ, ବୋହୁ ଆଇଲେ କଣ ପକ୍ଷି-ପସ ଛଡ଼େଇବ ?

ପଦ୍ମ—ନାଇଁ ଲୋ ଭଉଣି, ଏ ପୁଅଟା ଲାଗି ମନ ବେସ୍ତ ହେଉଛି। ସବୁ ବେଳେ ଖାଲି ବାଇଅଙ୍କ ପରି ହେଲା, କ'ଣ କରିବା।

( ଯୋଦ୍ଧା ଓ ସେମିଜ ହସ୍ତେ କୁନ୍ଦର ପ୍ରବେଶ )

କୁନ୍ଦ—ପାପଣ୍ଡାଣି ! ଫେର ଏଇକ୍ଷଣି ଅନର୍ଥ ଲାଗିବ, ପୁଅଙ୍କ ଆସିବା ବେଳ ହେଲାଣି। ତୁମେ ସେମିଜ ଖଣ୍ଡ ଗଳେଇ ପକଉନା, ଯୋଡା ଯୋଡ଼ାକ ଗୋଡ଼ରେ ପୁରେଇ ଦଉନା; ଆସି ଦେଖି

ପକେଇବେ ତ ବାଙ୍କ ରହିବ ନାହିଁ ବାଙ୍କ ରହିବ ନାହିଁ । ନଅ ନଅ ଆଉ ଅନଉଚ କ'ଣ ( ପଦ୍ମାଙ୍କୁ ସେମିଜ ପିନ୍ଧାଇବା ଉଦ୍ୟମ )

ପଦ୍ମ—ଓ ହୋ ! ଭଲ କଥା ହେଲା ଅପି, ଦେଖ ଲୋ ଟିକିଏ—

କୁନ୍ଦ—ଆଉ ରହିବ କ'ଣ ? ହେଇ ଆଇଲେ ଆଇଲେ ପିନ୍ଧ ପିନ୍ଧ ।

ପଦ୍ମ—( ଲୁଗା ଉପରେ ସେମିଜ ପିନ୍ଧ ) ଯୋଡା ଗୁଡ଼ାକ ଆଉ ମାଡ଼ୁ ଯାଉନ ନାହିଁ, ଗୋଡ଼ ଝାଇଟାରେ ଫୁଟୁକା ହୋଇ ଘାଆ ହେଇଗଲାଣି, ଖୁବ ପୋଡ଼ୁଛି, ଆଉ ପାରିବ ନାହିଁ ।

କୁନ୍ଦ—ଅଲୋ ଇଏ ଫେର କ'ଣ, ପାରିବ ନାହିଁ ଯାଉନ ନାହିଁ କହିଲେ କେମିତି ହବ । ପୁଅଙ୍କ କଥା ତ ଜାଣ, ନଅ ଦିଅ ମାଡ଼ ମାଡ଼ । (ଜୋର ପୂର୍ବକ ଯୋତା ମଡ଼ାଇ ଦେଇ, ଏବଂ ମସ୍ତକରେ ଏକ ଗୋଟି ହ୍ୟାଟ୍ ପିନ୍ଧାଇ ଦେଇ ) ସାଆନ୍ତାଣି, ଭଲ ମନେଇଛୁ, ତୁମେ ଟିକିଏ ଟିକିଏ ଚାଲି ଶିଖୁଥା ମୁଁ ଯାଉଚି ଆସେଁ ।

( କୁନ୍ଦର ପ୍ରସ୍ଥାନ )

ରମା—( ସ୍ୱଗତ ) ଭଲ କାଳ ହେଲା । ଭଲ ପାଠ ପୁଅ ପଢ଼ିଲା ମାକୁ ଘୁଅଙ୍ଗ କରି ଛାଡ଼ିଲା । ମୁଁ ଯାଉଛି ଲୋ ( ପ୍ରସ୍ଥାନ )

ପଦ୍ମ—ଏ ଠୋକାଠା ମନେ ଏବେ ଏଭେ ଅବସ୍ଥା କରୁଚି ( ଅତି କଷ୍ଟେ ଛୋଟେଇ ଛୋଟେଇ ଚାଲିବାର ଅଭ୍ୟାସ କରୁ କରୁ ମଧୁସୂଦନଙ୍କର ପ୍ରବେଶ )

ମଧୁ—( ସଭୟେ କମ୍ପି କମ୍ପି ) ଏଁ, ଏଁ, ଆଉଁ ଆଉଁ, ମା ! ମା ! ମା ! ମା ! ମୋତେ ରକ୍ଷା କର, ରକ୍ଷା କର, ରକ୍ଷା କର—

( ଭୂମିଷ୍ଠ ପ୍ରଣିପାତ ଓ ପଦ୍ମାର ପ୍ରସ୍ଥାନ )

ମଧୁ—( କମ୍ପି କମ୍ପି ) ଇରେ—ଚନ୍ଦର ! ଇରେ—ଚନ୍ଦର ! ଚନ୍ଦର—ଚନ୍ଦର—

( ଚନ୍ଦ୍ରମଣିର ପ୍ରବେଶ )

ଚନ୍ଦ୍ର—କଣ କଣ, କଣ ସାଆନ୍ତେ । କଣ ହେଲା । କଣ ହେଲା !
( ମଧୁସୂଦନଙ୍କୁ ଧରି ) ହରେକୃଷ୍ଣ ହରେକୃଷ୍ଣ କୃଷ୍ଣ କୃଷ୍ଣ ରାମରାମ ( ବାରମ୍ବାର ହରିନାମ ଉଚ୍ଚାରଣ କରି ମଧୁସୂଦନଙ୍କୁ ବାରମ୍ବାର ଫୁଙ୍କିବା )

ମଧୁ—ଚଣ୍ଡୀ, ଚଣ୍ଡୀ, ମଶାଣିଚଣ୍ଡୀ କେମିତି ଅଛି ଏଘରେ ବିଶ୍ରାମ କଲାଣି, ପଦ ବୋଉ-ଲୁଅଢ଼େ ଗଲା । ମୁଁ ତ ଭେଟଣା ହୋଇଗଲି ।

ଚନ୍ଦ୍ର—(ବାରମ୍ବାର ଫୁଙ୍କି ଫୁଙ୍କି ଓ ଛାତିକି ଚେପ ପକାଇ) ଡରିଗଲ ସାଆନ୍ତେ ! କିଛି ନାହିଁ କିଛିନାହିଁ । ମୁଁ ଯାଇଁ କଣ୍ଡୁସି ଲେଙ୍କା ଗୁଣିଆକୁ ଡାକି ଆଣିବି । ଗୃହ କଣରେ ଗୃହଠା ନୃହାକଣ୍ଠୀ ପୋତି ହୋଇ ଯିବ, ମଶାଣିଚଣ୍ଡୀ ଫଶାଣି ଚଣ୍ଡୀ ଲୁଅଢ଼େ ଛାଡ଼ି ପଳେଇବେ । କିଛି ଚିନ୍ତା ନାହିଁ, ଥୟ ହୁଅ ଥୟ ହୁଅ ।

ମଧୁ—(ଖର୍ବ ନିଶ୍ୱାସ ଛାଡ଼ିଛାଡ଼ି) ମୋର ନିଶ୍ୱାସ ( ହସ୍ତଦ୍ୱାରା ଇଙ୍ଗିତ କରି ) ଘରେ ପଶୁନାହିଁ ।

ଚନ୍ଦ୍ର—(ଫୁଙ୍କି ଫୁଙ୍କି ସ୍ୱଗତ) ସାଆନ୍ତକୁ ତ ମୋର ଅପଲ ମଶାଣିଚଣ୍ଡୀ ଗିରିପି ଗଲାଣି (ପ୍ରକାଶ୍ୟେ) ଚାଲ ସାଆନ୍ତେ ବୈଠକ ଘରକୁ, ଟିକିଏ ଶୋଇପଡ଼ ( ମଧୁସୂଦନଙ୍କୁ ଘେନି ଚନ୍ଦ୍ରମଣିର ପ୍ରସ୍ଥାନ )

( କୁନ୍ଦର ପ୍ରବେଶ )

କୁନ୍ଦ—(ହସି ହସି) ସାଆନ୍ତେ ଲୁଅଢ଼େ ଗଲେ ଆଜି ମୋ ସାଆନ୍ତାଣୀ ଲୁଅଢ଼େ ଗଲେ । ଭଲ ଯୁଗ ହେଲା । ବୁଢ଼ୀବନେ ମା'କୁ ପୁଅ ବିଭା କରେଇବ—କ'ଣ ଶୁଣିବ—

ଗୀତ ।

କାଳ କି ହେଲା ଅକାଳ
ଯେତେଣେ ସବୁ ପାଠପଢ଼ି
ହେଲେ ବିଟାଳ ।

ଦେଖ ପୁଣି ଅଦ୍ଭୁତ ମଜା
ବୃଢ଼ାଓଁଲୁ ବାପା ଅଜା
ଦଣ୍ଡରେ ଲୁଟଲେ ପୁଏ
ବୋଡ୍ଡଏ ଖାଟାଳ ।
( ପ୍ରସ୍ଥାନ )

—୦*୦—

## ୪ର୍ଥ ଦୃଶ୍ୟ ।

### ପଟ୍ଟନାୟକଙ୍କ ଟୌପାଢ଼ୀ ।

(ଚନ୍ଦ୍ରମଣି ବାବୁଙ୍କ କାନ୍ଦୁ ପ୍ରବେଶ)

ଚନ୍ଦ୍ର—ଓହୋ, ମୋ ସାଅନ୍ତଙ୍କ ଦହ ଗଲ୍ଲ ବେସ୍ତ । ମଣାଣିଚଣ୍ଡୀ ଭକ୍ତଙ୍କ ମୋଡ଼ ଦେଇଥିଲ । ମତେ ସବୁ ମିଳିବ, ଏଭଳଥ ସାଅନ୍ତ ଆଉ ମିଳବ ନାହିଁ । ଓହୋ ! ହେ ଠାକୁରେ ମୋ ସାଅନ୍ତଙ୍କୁ ଭଲ କରଦଅ ।

( କାହ୍ନାଇ ଦାସ ମଧ୍ୟସ୍ଥର ପ୍ରବେଶ )

କହ୍ନେଇ— କ ବାବୁଟେ ବେସ୍ତ ହଉଚ କାହିଁକ । ସାଅନ୍ତଙ୍କ ଦହ କ'ଣ ହେଇଚ କ ?

ଚନ୍ଦ୍ର—ଅରେ ନାହିଁ ହୋ ସାଅନ୍ତଙ୍କ ଦହ କାହିଁ କ କ'ଣ ହବ, ଅମେ ବେସ୍ତ କାହିଁ କ ହବୁଁ । ତେମେ କ'ଣ କରି ଅଇଲ ଅଗେ କହିବଟି ।

କହ୍ନେଇ—ଏ ପର୍ଯ୍ୟନ୍ତ ଛୁଡ଼ନାହିଁ । ସାତ ହଜାର ଯାଏ ରାଜ ହେଲଣି ।

ଚନ୍ଦ୍ର—ସାତହଜାର ଦବାକୁ ରାଜ ହେଲଣି ତ ? ସାଅନ୍ତଙ୍କୁ ଡାକୁଅଣେ ତେବେ, ତେମେ ବସ, ବସ ଭଲ କରି ବସ । (ସ୍ୱଗତ) ସାଅନ୍ତ ମୋର ଏଇଥିଣି ଶୁଣିଲା ଖଣି ଝାଡ଼ଝୁଡ଼ ହୋଇ ଉଠିବେ ପରା । ତାଙ୍କ ଶୀ ଯୋଗମ ମଶାଣିଚଣ୍ଡୀ ମଶାଣିଚଣ୍ଡୀ କୁଅଢ଼େ ଛାଡ଼ ପଳେଇବେ । (ପ୍ରସ୍ଥାନ)

କନ୍ଦେଇ—ବୁଢ଼ା ଭଲ ବେପାରଟାଏ ଖୋଜି ଦେଇଛି । ପୁଅ ବେପାର
ଠୁଉଁ ବଳି ଆଉ ବେପାର ନାହିଁ । ଖାଲି ଲାଭ । ବୁଢ଼ା ବଗ୍ଘର
କଷଚ ଏଇଥିରେ କୋଠାବାଡ଼ି ଜମିଦାରୀ କରିନେବ ।

(ମଧୁସୂଦନ ଓ ଚନ୍ଦ୍ରମଣିର ପ୍ରବେଶ)

ମଧୁ—ହରେକୃଷ୍ଣ, ହରେକୃଷ୍ଣ, ହରେକୃଷ୍ଣ, ହରେକୃଷ୍ଣ, ମଧ୍ୟସ୍ଥେ
ଆଇଲ ? କ'ଣ ହେଲା କୁହ ।

କନ୍ଦେଇ—ଆଜ୍ଞା ପାଞ୍ଚ ହଜାରରେ ମଲା ଧୂଳି ନାହିଁ । ଆଉ ବେଶି କଥା
ଲଗେଇଚ ଯାହା ହବ । ମୋ କଥା ଏକା ସ୍ୱୀକାର କରିବେ ।

ମଧୁ—ହିଁ ହିଁ ସେ କଥା ଆଉ କହିବାକୁ ହବନାହିଁ ।

ଚନ୍ଦ୍ର—ଓଃ ମଧ୍ୟସ୍ଥେ, ତୁମକୁ କହୁଚି ଏସ୍ ସେ କଥା ଆଉ କାହାଁକି
ମୁହଁରେ ଧରୁଚ, ଯାହା ପାଇବ ପାଇବ ।

ମଧୁ—ଆଉ ଗହଣା ଗାଣ୍ଠି, ସାଇକଲ ?

କନ୍ଦେ—ସେ କଥା ତ ମୂଳରୁ ହେଇଚି, ଆପଣ ଯାହା କହୁଛନ୍ତି
ତା'ଠାରୁ ବେଶି ପାଇବେ କମ୍ ହବ ନାହିଁ ।

ମଧୁ—ତେବେ ଏଇ ପକା ଜବାବ ହେଲା, ଯାଅ । ବାହାଘରର ଦିନ
ଠିକଣା କରି ଟଙ୍କାକଉଡ଼ି ନେଇଆସ ।

କନ୍ଦେ—ହଉ ତେବେ ଯାଉଚି (ଅଭିବାଦନ ଓ ପ୍ରସ୍ଥାନ)

ମଧୁ—ଚନ୍ଦର । ଦେଲାବାଲା ଭଗବାନ୍ । ହରେକୃଷ୍ଣ, ହରେକୃଷ୍ଣ ।
( ଉପବେଶନ )

ଚନ୍ଦ୍ର—ଅଜ୍ଞା ଠିକ୍ । ଦେଲାବାଲା ଭଗବାନ୍ । ନେଲାବାଲା ତ ଏକା
ଆପଣ । ଆଉ ଫେଇ ଗୋଟା କେହି ପୁଅ ଏମିତି ଜନ୍ମ ହବ କି
(ଉପବେଶନ)

ମଧୁ—ଚନ୍ଦର ! ଏ ପାଞ୍ଚ ହଜାରଟି ଅସିଗଲେ କରଜା ଟଙ୍କା ଯାହାର
ଯାହା ବାକି ଅଛି ଆଗେ ଦେଇଦବା ।

ଚନ୍ଦ୍ର—ଅଜ୍ଞା ମୋ ଧାନ କେଇ ଭରଣ—

ମଧୁ—ଓଃ କାହିଁକି ସେ କଥା କହୁଚୁ । ତୁ କୁ ବି ଦେଇଦବା । ଏ
ଘର ନୋଇ ବଗିଚ ଧୂଳିଆ ପିଟିଦବା !

ଚନ୍ଦ୍ର—ଅଜ୍ଞା ଭଲ ହବ, ମୋ ଧାନ ସେଥକୁ ହେଉନ୍ଥେଲେ ଆଜ କିଛୁ ବୁଝିଅଛୁ ଦେଖା ନ ଥିବ । ସାଆନ୍ତ, ଦବ ହିଁକିଏ ଭଣା ଲାଗୁଛି ? ଅଫିମ ଟିକିଏ ବେଶି ଦେଇଥିଲ । କଣା ହେଲା କ ?

ମଧୁ—ନାହିଁ ଠିକ୍ ଅଛୁ । ଦେହ ଉପୁଆସ ଲାଗୁଛି । ଏ ମଣ ଣିଚଣ୍ଡୀ—

ଚନ୍ଦ୍ର—ସାଆନ୍ତ ଆଜ ତା ନା ଧର ନା । ମୁଁ ତା କମିଥାଁ କରପାଇଲଣି । ଆଜ କେର ସେ ଏ ଚକଡ଼ା ମାଡ଼ିବ ନାହିଁ । କଲ୍ ଟିକିଏ ବାଜିବ ?

ମଧୁ—ଅଛା ଦଳ । (ଚନ୍ଦ୍ରମଣିଙ୍କ, ଗଞ୍ଜାମର୍ଦ୍ଦନ ରଘୁନାଥ ଓ ପ୍ରାଣକୃଷ୍ଣଙ୍କର ପ୍ରବେଶ) ଅସ ଅସ ପାଣୁଲ୍ଲଇ, ଅସ ରଘୁଲ୍ଲଇ । ବସ ବସ ବସ । ତମୁକୁ କେତେ ଖୋଜୁଥିଲ । ( ପ୍ରାଣକୃଷ୍ଣ ଓ ରଘୁନାଥଙ୍କର ଉପବେଶନ ସମସ୍ତଙ୍କର ଗଞ୍ଜାସେବନ )

ପ୍ରାଣ—ଅମେ ତ ଠିକ୍ ବେଳରେ ପହଞ୍ଚି ଯାଇଚୁଁ ।

ପ୍ରାଣ—ଚନ୍ଦ୍ରମଣି ! ଏ ଯୋଗକୁ ଗୋଟିଏ ଭଜନ ନ ହେଲେ ଅଜ ହଉ ନାହିଁ ।

ରଘୁ—ହଁ, ହଁ,—ଚନ୍ଦ୍ରମଣି ଗୋଟିଏ ହେଉଁଯାଉ ।

ଚନ୍ଦ୍ର— ଗୀତ ।

( କୀର୍ତ୍ତନ । )

ଏ ଭବସଂସାରୁ .ମାୟାବନ୍ଧନରୁ

ଲଭିବାକୁ ପରିତ୍ରାଣ

ସନ୍ଧ୍ୟା ସକାଳରେ କର କୃଷ୍ଣସେବା

ପ୍ରଫୁଲ୍ଲ ହୋଇବ ପ୍ରାଣ ।

ବଡ଼ ସୂକ୍ଷ୍ମବଧି,

ହେଲେ ହେବ ସବୁ ବାଞ୍ଛାସିଦ୍ଧି ।

ଯେ କାଳ ଶ୍ରୀକୃଷ୍ଣ     ଥିଲେ ମହାବିଷ୍ଣୁ
ଏ କୃଷ୍ଣ ନୋହେ ସେପର,
ନିଜ ଭକ୍ତଗଣେ     ନ କରେ ଛଳନା
ସାଦରେ ନଏ ଆଦର ।
(ଥରେ ଖାଲି) ପ୍ରେମ ଲାଗିଗଲେ
(ଯେତେ) ଛଡ଼ାଇଲେ ସେ ନ ଛାଡ଼େ ଭଲେ ।
(ସେହି) ପ୍ରେମେ ହୋଇ ହେଳ     ଜଠାରେ ଅନଳ
ଲଗାଇ ଯେବେ ଶିଖିବ,
ଅନିତ୍ୟ ସମ୍ପଦ     ଯେତେ ଯାହା ଥିବ
(ଗୃହୁଁ ଗୃହୁଁ)ଧୂମ ହୋଇ ଉଡ଼ିଯିବ ।
(ସ୍ୱୟଂ) ବ୍ରହ୍ମା ଅହର୍ନିଶି
ବାଞ୍ଛବେ ତବ ନେତ୍ରେ ଆସି ।
ପୃଥିବ ଧନ     ମାନ ଅଭିଳାଷ
ଯଶ ଅପଯଶ ଜ୍ଞାନ,
ଯାହା ଯହୁଁ ମିଳି     କୃଷ୍ଣ ପଦେ ଢାଳି
କୃଷ୍ଣ ପଦେ ରଖ ଧ୍ୟାନ ।
ପ୍ରେମେ ଚଳି ଚଳି
ଭବସାଗରବାର ଯାଅ ତର ।

( ମକୁନ୍ଦଦାସ ମଧ୍ୟସ୍ଥ ଓ ଅନ୍ୟ ଦୁଇଜଣଙ୍କର ପ୍ରବେଶ )

ମକୁ—ଛି ଛୀ ପଠନାହାକେ ଏ କି ଧପାବାଜି କଥା ଏ ? ହଜାର ଟଙ୍କା ବଇନା ନେଇ ଫେର ଏଣେ ତେଣେ କାହିଁକି ନଡ଼ବଡ଼ ହେଉଛ ? ଯେବେ ନ କରିବାର କଥା ତେବେ ସେ ଭଲ ଲୋକ, ତାଙ୍କ ଟଙ୍କାଟି ଚୂପ କରି ଫେରେଇ ଦିଅ, ଅଉ କଥା ବଢ଼ା ନା ।

ମଧୂ—କାହିଁ କାହିଁ ମଧ୍ୟସ୍ଥେ କିଛି ମନେ କରିବ ନାହିଁ । ସେ କଥା କିଛି ନୁହେଁ ।

୧ମ ବ୍ୟକ୍ତି—(ସକ୍ରୋଧେ) କ'ଣ କଛୁ ନୁହେଁ । କୁଅଚ୍ଚୋର, ଧପାବାଜ, ବଦ୍‌ମାସ୍, ଭଦ୍ରାବ୍ ଟଙ୍କା ଫକା ନ ଦେଲେ ଗୁଲ୍ଲ ଏବ ଥାନାକୁ । ( ପ୍ରସ୍ଥାନୋଦ୍ୟମ )

ମଧୁ—ତମ ଟଙ୍କା ଆମେ କାହିଁକ ରଖିବୁ । ଶୁଣ, ଶୁଣ, ଶୁଣ ।

ଚନ୍ଦ୍ର—(ଅତି ବ୍ୟସ୍ତଭାବେ) ଯାଅନ୍ତୁ, ଯାଅନ୍ତୁ, ଦେଇପକା, ଦେଇପକା । ଅମର ଟଙ୍କା କ'ଣ ହବ । ଅମର ଟଙ୍କା କ'ଣ ହବ । ବାବୁ ବାବୁ ଫେରି ଆସନ୍ତୁ, ଫେରି ଆସନ୍ତୁ, ଆମ ଯାଥାନ୍ତୁ ଟଙ୍କାରଙ୍କ ନୁହନ୍ତୁ । ଟଙ୍କା କେବେ ଫେରିଆସନ୍ତୁ ।

ମଧୁ—ଚନ୍ଦ୍ରର, ଟଙ୍କା ଅଣିଦେଇ ଦେ ।

ଚନ୍ଦ୍ର—ହିଁ ଯାଅନ୍ତୁ ମୁ ଅଣେ ( ଚନ୍ଦ୍ରମଣିର ଦ୍ରୁତ୍ପ୍ରାନ )

ମଧୁ—ଅମେ ଅପଣଙ୍କ ଟଙ୍କା କାହିଁକ ରଖିବୁଁ । ଅଜ୍ ଅଜ୍ଜେତ ପଙ୍କ୍ତା ଜବାବ ଦେଇନାହିଁ, ଜବାବ ଦେଇଥିଲେ ଅପଣଙ୍କୁ ଡକେଇ ଅଣି ଅପଣଙ୍କ ଟଙ୍କା ଦେଇ ଦେଇଥାନ୍ତୁ । (ଚନ୍ଦ୍ରମଣିର ଟଙ୍କାସହ ପ୍ରବେଶ)

ଚନ୍ଦ୍ର—ନିଅ ନିଅ ନିଅ ସେ ଟଙ୍କା ନିଅ । ( ଟଙ୍କା ଦ୍ରୁଦାନ )

ମଧୁ—ଆପଣଙ୍କ ଭଲଲୋକ ଜଣାଗଲା ଅମେ ଯାଉଚୁଁ ।

( ସମ୍ପ୍ରିଙ୍କର ପ୍ରସ୍ଥାନ )

—o:※:o—

## ୫ମ ଦୃଶ୍ୟ ।

ବୈଠକଖାନା ।

( ନରହରି ବାବୁ ଏବଂ ଏକଜଣ ଗାୟକ ଉପବିଷ୍ଟ )

ନର—ଅଜ ଗୁଟିଟା ବେଳକୁ Meeting ଅଛି ।

(ପଦ୍ମନାଭ ବାବୁ, ଗୁରୁଚରଣବାବୁ ଓ ଶ୍ରୀରାମବାବୁମାନଙ୍କର ପ୍ରବେଶ ଏବଂ ପରସ୍ପର କର ମର୍ଦ୍ଦନ ଇତ୍ୟାଦି ଦ୍ୱାରା ସମ୍ଭାଷଣ)

ପଦ୍ମ—ଚୁଲଯିବା, ଅଜ୍ ଡେରି କାହିଁକ ?

ନର—Time ହୋଇନାହିଁ, One hour more.

ଶ୍ରୀଗ —ଟିକିଏ ଅଗରୁ ଯିବାକୁ ହେବ । Canvas କରିବାକୁ ହେବ Resolution ଗୁଡ଼ିକ ଯେପରି Pass କରି ନେବା ନା ।

ପଦ୍ମ—ମୁଁ ସ୍ତ୍ରୀ ସ୍ୱାଧୀନତା ସମ୍ବନ୍ଧେ ଗୋଟାଏ Speech ଦେବି ।

ନର —ଦରକାର, ବଡ଼ ଦରକାର । ସେମାନେ ସମାଜରେ ସବୁ ସ୍ଥାନରେ equal rights ପାଇବା ଉଚିତ ।

ଗୁରୁ—Quite so. ଆଉ ଏ ସମାଜର nasty system ଗୁଡ଼ିକ କ୍ରମେ କ୍ରମେ remove କରିବାକୁ ହେବ । ପଦ୍ମନାଭ ବିବାହ ବେଳକୁ new system ଗୁଡ଼ିକ introduce ହୋଇଯିବା ଦରକାର ।

ଶ୍ରୀବନ—ବିବାହ କଥା କେତେ ଦୂର ଗଲା ?

ନର—ସେ ସବୁ ଠିକ୍ ଠାକ ହୋଇ ରହିଅଛି । Bride ଆଉ ତାର College friends ସମସ୍ତେ ରାଜି । ଏଣେ ବୁଢ଼ାବି ପାନରେ ପଡ଼ିଲେଣି । ଅଗେ ପାଞ୍ଚହଜାର ଗଣୁଥିଲେ, ବର୍ତ୍ତମାନ ସାତହଜାର ଗଣିଲେଣି ।

ଗୁରୁ—ଚାଲ ଯିବା ଆଉ ଡେରି କାହିଁକି ।

ନର—ହଁ ଯିବା, ଯଥେଷ୍ଟ time ଅଛି । ଜଣେ excellent Musician ଅଛନ୍ତି, ଗୋଟାଏ ଗୀତ ଶୁଣ—ଯିବା । (ଗାୟକଙ୍କ ପ୍ରତି) ଗାଉନ୍ତୁ, ଗୋଟିଏ ଗୀତ ଗାଇବେ regarding the present Society.

ଗୀତ ।

ଝିଞ୍ଜିଟ—ଦାଦରା ।

ନରନାରୀଙ୍କ କଳହ ଗୋଳ ମୀମାଂସା କର,
ବଢ଼ି ବଢ଼ିକା କଥା କ୍ଷେପେ ଖଞ୍ଜିବ ଘର ।
ନର ବୋଲନ୍ତି ଅମ୍ଭେ ବଡ଼ ଥିବୁଁ ଅଗରେ,
ନାରୀ ବୋଲନ୍ତି ଅମ୍ଭେ ଊଣା କେଉଁ ଗୁଣରେ,

ଅମ୍ଭେ କହୁଁ କେହ୍ନ କାହାକୁ ନୃତନ୍ତ ପାନ,
ଭୁଞ୍ଜି ବସିଲେ ନର ନାରୀ ଦୁହେଁ ସମାନ;
ନରକାଠଙ୍କ ଅବସ୍ଥର
ନାହ୍ନ ବସିରୁ ଅଗ ଦୁଆର,
କବାଟ କୋଣରେ ଲୁଚ ରହ ଏଥର,
ବାଣ୍ଡପେଣ୍ଡା ଏବେ ଏଣିକ ରମଣୀଙ୍କର ।
ନାରୀ ବୋଲନ୍ତି ରନ୍ଧା ବଢ଼ା ଦୁଆର ଘର
ଲିପା ପୋଛ ବଟା ଘଷା ଗାଈ ବେପଛ,
କରି ଅପିଲୁଁ ଏତେ କାଳ ଆଉ ନ କରୁଁ,
ବନାକେତେ ଘରୁ ବାହାରି ପଦାରେ ଚରୁଁ,
କିଏ ଲଙ୍ଘିବ ଏ କଥାକୁ
ହାଣ କୁରାଢ଼ି ଅଣ ମଥାକୁ,
ଫୁଙ୍କ୍ମାରି ଏ ସକଳ କରିବେ ନର
ଘର କରିବା ଶାସ୍ତ୍ର ଯେତେବ ଥିବ ତାଙ୍କର ।
ଆଉ ଗୋଟିଏ ଭରି ଉଜର ରମଣୀଙ୍କର,
ପିଲା ପ୍ରସବ ଫୁଙ୍କିଯାକ ସବୁ ଅମ୍ଭର,
ସେ ସେଥିକ ବାଣ୍ଟକୁଣ୍ଟ ନ ହେବ ଯେବେ,
ଏ କଳିଆ ନ ମେଣ୍ଟିବ କଦାପି କେବେ,
ଏ ଅମ୍ଭର କାଳ ବସ୍ତର,
ଫିକର କର ଯେ ଯାହାର,
ନାରୀମାନେ ହିଁଅ ସ୍ୱାଧୀନ ଥାଉ ଭୁମ୍ଭର
ପୁଅମାନଙ୍କୁ ପୁରୁଷ ଏବେ ସପବ କର ।

( ପଟକ୍ଷେପ )

—o—

# ଦ୍ୱିତୀୟ ଅଭିନୟ ।

## ୧ମ ଦୃଶ୍ୟ ।

ପଟ୍ଟନାୟକଙ୍କ ଚୌପାଢ଼ୀ ।

( ଚନ୍ଦ୍ରମଣିର ପ୍ରବେଶ )

ଚନ୍ଦ୍ର—ସାଅନ୍ତେ କୁଅଡ଼େ ଗଲେ । ଏଇକ୍ଷଣି ବାହାଘର ଗଡ଼ବଡ଼ରେ ଅଣ୍ଟ କିଛୁ ଠିକଣା ରହୁପାରୁ ନାହିଁ । ସାଅନ୍ତେ ଦ'ହଜାର ଟି କଟକ ଆଣିଲେ । ବାଣ ଦେଖଣ ଖୁବ୍ ସଜିଲ ହେଉଛି । କନ୍ୟାବାପ ଏ ପର୍ଯ୍ୟନ୍ତ ପଇସାଟିଏ ଦେଲା ନାହିଁ । କହୁଛି ଜଣଙ୍କର ବଇନା ଫେରେଇଚ, ମୋତେ କାଲେ ହଇରାଣ କରିବ । ବର ନ ପହଞ୍ଚିଲେ ଏକ ପଇସା ଦେବ ନାହିଁ । ସାଅନ୍ତେ ଅମର ଖୁବ୍—

ଗୀତ ।

ଝିଞ୍ଜିଟ—ଯତ୍ ।

ଅମୃତାରୁ ପୁଣି ହେଏ ଆନ,
ଘଣ୍ଟା ମାଟିଟିକ ବନ୍ଧକ ପକାଇ
ଚଢ଼ି ବୁଲୁଥାଉଁ ତାମଯାନ ।
ଜମି ବାଡ଼ି ଯାହା ଥିଲା ବନ୍ଧ ସଙ୍ଗେ
ରଖିଅଛୁଁ ନିଜ କୁଳମାନ,
ପେଟ ଜଅଣ୍ଟକୁ ପାଉ ଘର ଖୋଜ
ଦେହ୍ରି ହୁଯାବରେ ଖାଉଁ ଧାନ ।
ଝିଅ ପୁଅଙ୍କର ବାହା ନିମିତ୍ତରେ
ହଜାର ରଖିଛୁଁ ନଜ ଟାଣ,

ଜମିଦାରୀ ମକ-  ଦମିକୁ ଛଡ଼ାଇ
ଫୁଟାଇଲୁଁ କେତେଛାନ୍ଦ ଦ'ଣ ।
ଲକ୍ଷ୍ମୀଗଜ ଖଦା-  ବାଢ଼ ବୃଢ଼ ଯାଜ୍
ଲମ୍ବ ପିଛାନ୍ତି ନ ହେଇ ସାନ,
ବାହା ବାହା କେହ  କହୁ ବା ନ କହୁ
ଆମ୍ଭ ଗୁଣ ଅମ୍ଭେ କରୁଁ ଗାନ ।
ଧଣ କଜଢ଼ରେ  ମଖଣ୍ଡି ମଧୁର
କଷ୍ଟସେବା କରେ ଧୈର୍ଯ୍ୟ ଦାନ,
ଧୂମ୍ର ପ୍ରସାଦରେ  ଜଗତ ଜଞ୍ଜାଳ
ଉଡ଼ଯାଇ ମିଳେ ଦିବ୍ୟ ଜ୍ଞାନ ।

( ନେପଥ୍ୟରୁ ଚନ୍ଦରକୁ ଡାକି ଡାକି
ମଧୁସୂଦନଙ୍କର ପ୍ରବେଶ )

ଚନ୍ଦ୍ର—ଆଜ୍ଞା କଣ କହୁଚନ୍ତି ?

ମଧୁ—କରେ କଣ ହେଲା । ଓହୋ, ଏ ଗଉଡ଼ ଭଣ୍ଡାରି ଗୁଡ଼ାକ ମତେ ନାକେରେ କନ୍ଦେଇ ପାଇଲେଣି । ପିଲା ଏ ଯାହା କହୁଛନ୍ତି ମିଛ ନୁହେଁ । ପାଲିଙ୍କି ପୁଅରି ସବୁ ବନ୍ଦ କରିଦିଅ । ଭଲ କହୁଚନ୍ତି—ସେ ଭଲ କହୁଚନ୍ତି । ମୁଁ ଏଥିରେ ପଢ଼ ନାକ କାନ ମୋଡ଼ି ହେଲଣି । ଆଜ୍ଞା କେବେ ଏଥିରେ ପଶିବ ନାହିଁ । ଯାହା ହେଲା ଏଇଥରକ । ଚନ୍ଦର, ଚନ୍ଦରା ।

ଚନ୍ଦ୍ର—ଆଜ୍ଞା କ'ଣ କହୁଚନ୍ତି ?

ମଧୁ—କରେ କୁଣିଆ ପୁଅର ସବୁ ଉଠିଗଲେ ?

ଚନ୍ଦ୍ର—ଆଜ୍ଞା ହଁ ସବୁ ଗଲାଣି, ଖାଲି ଆପଣଙ୍କ ପୁଅର ଅଛୁ ।

ମଧୁ—ଫୁଲ ବାଣ ?—

ଚନ୍ଦ୍ର—ସବୁ ଗଲେଣି । ଆପଣ ଆସନ୍ତୁ

ମଧୁ—ଛଳରେ ମୋ ଲାଗି ମଠାଯୋଡ଼େ କୋଉଠୁ ପାଇଲୁ ?
ଚନ୍ଦ୍ର—ଆଉ ପାଇବ କୋଉଠୁ, ମୋରି ଯୋଡ଼େ ଥିଲା ସେଇଆକୁ ବାନ୍ଧିଛି ।
ମଧୁ—ତୋର ଥିଲା ? ଆଚ୍ଛା ଆଚ୍ଛା, ବେଶ ବେଶ । ଚାଲ ଯିବା ।

( ଉଭୟଙ୍କର ପ୍ରସ୍ଥାନ )

——*——

## ୨ୟ ଦୃଶ୍ୟ ।

କନ୍ୟାକର୍ତ୍ତା ଘନବନ୍ଧୁ ଚଉଧୁରୀଙ୍କ ଗୃହ ।

( ରମଣୀଗଣଙ୍କର ପ୍ରବେଶ)—ଗୀତ ।

ଆସ ଲୋ ଆସ ଦେଖିବା ବର
ବାହାଘର ଖୁବ ହରବର ।
ପିଲାଦିନରୁ ପାଳି ପାଳି ଝିଅ
ଯେଉ ପଳାଇବ ପର ।
ବାହାଘର ଝିଅ ଉଠି ଯାନ୍ତି
କାନ୍ଦ ବୋବ କରୁ ନ ରହନ୍ତି ।
ସୁଖେ ସଂସାର କରନ୍ତେ
ନ ଖୋଜନ୍ତେ ପରଘର ।

( ପ୍ରସ୍ଥାନ )

( ନେପଥ୍ୟେ ବାଦ୍ୟନାଦ ଓ ଅତସବାଜିର ଶବ୍ଦ । ଶଙ୍ଖନାଦ ଓ ହୁଳହୁଳିଧ୍ୱନି । ବର, ବରଯାତ୍ରିଗଣ, ମଧୁସୂଦନ, ନରହରି, ଚନ୍ଦ୍ରମଣି, ପୁରୋହିତ ଓ ଜ୍ୟୋତିଷ ଆଦି ଏବଂ ଘନବନ୍ଧୁ ଚଉଧୁରୀ ଓ ଅନ୍ୟ କନ୍ୟାପକ୍ଷମାନଙ୍କର ପ୍ରବେଶ ଓ ଜ୍ୟୋତିଷଙ୍କର ମଙ୍ଗଳସ୍ତୁତି ପାଠ । କନ୍ୟାପକ୍ଷମାନଙ୍କ ଦ୍ୱାରା ବରଯାତ୍ରିମାନଙ୍କର ଅଭ୍ୟର୍ଥନା ଓ ମଧୁସୂଦନଙ୍କ ବ୍ୟତୀତ ଅନ୍ୟ ବରଯାତ୍ରିଙ୍କର ଯଥା ସ୍ଥାନେ ଉପବେଶନ ।)

ମଧୁ— ମଧ୍ୟସ୍ଥେ, ହୋ ମଧ୍ୟସ୍ଥେ, ମଧ୍ୟସ୍ଥ କୁଆଡ଼େ ଗଲେ ।

ଘନ— ଆପଣ ଚରଣ ଧୌତ କରନ୍ତୁ । ମଧ୍ୟସ୍ଥେ ଅଛନ୍ତି, ଆସୁଚନ୍ତି ।

ମଧୁ—ଚନ୍ଦର୍, ଚନ୍ଦର୍, ଅରେ ସେ ମଧ୍ୟସ୍ଥ କୁଆଡ଼େ ଗଲା ତାକୁ ଡାକ ।

ଘନ—ଆପଣ ଚରଣ ଧୌତ କରନ୍ତୁ ।

ମଧୁ— ଅରେ ରଖିଦିଅ ତମ ଚରଣ ଧୌତ । ଟଙ୍କାର ଦେଖାନାହିଁ— ଅଗେ ଚରଣ ଧୌତ କର । ସେ ପାଜି ବଦମାସ୍, କୁଆଡ଼େର ମଧ୍ୟସ୍ଥ କୁଆଡ଼େ ଗଲା । ତାକୁ ମୋ କଚକ ଡାକ ଆଣ ରେ ଚନ୍ଦରା । ଚନ୍ଦର୍ କୁଆଡ଼େ ଚଳୁରେ ଚନ୍ଦରା ।

ଘନ— ଟଙ୍କା ହଜୁର । ବ୍ୟସ୍ତ କାହିଁକି ହଉଚନ୍ତି ।

ମଧୁ—ଟଙ୍କା, ଟଙ୍କା, ଅଗେ ଟଙ୍କାଟି ଥୁଅ ପଛେ ଯାଇ ଯୋଉ କଥା ।

ଘନ—ହଉ ଅଜ୍ଞା, ଆଗେ ଟଙ୍କା ହଜୁର ।

ମଧୁ—ପାଞ୍ଚ ହଜାର ଟଙ୍କା, ପାଞ୍ଚ ହଜାର, ଦେଉଚଟି ?

ଘନ—ହଁ ପାଞ୍ଚହଜାର । ଆପଣ୍ଡୁ ଗଣିନେବେ । ବର କେଦବ ଘଜନ୍ତୁ ?

ମଧୁ—ସେ କଥା ହବ ନାହିଁ । ଅଗେ ଟଙ୍କା, ଟଙ୍କା ଗଣି ନ ସାରିବାଯାଏ କିଛି ହବ ନାହିଁ । ଚନ୍ଦର୍ ମୋ ସାଙ୍ଗରେ ଆ ।

(ମଧୁସୂଦନ, ଘନବନ୍ଧୁ ଓ ଚନ୍ଦ୍ରମଣିର ପ୍ରସ୍ଥାନ)

(ନର୍ତ୍ତକୀମାନଙ୍କର ପ୍ରବେଶ)—ଗୀତ ।

ଝିଞ୍ଜୋଟି—ଦାଦରା ।

ଆମର ସବୁ
ଖୋଲଟା ପାଠକୁ ଓଲଟା ହିସାବ
ଓଲଟା ବୁଝାମଣା,
ଆମେ ସବୁ
ଅନ୍ଧ ଘରେ ଦେଖୁଁ କୋଣକ ବାଟରୁ
ଅଲ୍‌ଅଙ୍କର କ୍ଷେତ୍ର ବଣା ।

ଅମ୍ଭେ

ଭଲ ନୟନରେ କୋଳପେ ଲଗାଇ
ଅପେ ଅପେ ହେଉଁ କଣା,
ପୁଣି
ଓଲଟା ବୁଝିବେ ବୁଝ ଚକ୍ଷୁ ଜନ
ଗଣ୍ଡ ଦନ ପେଲୁଁ ଘଣା ।

ଅମ୍ଭେ

ଅଧ ଅନ୍ଧମାନେ ଅପଣା ଗାଲରେ
ଆପେ ମାରୁଁ ଚଟକଣା,
ପୁଣି
ନିଜ ଗୋଡ଼ତଳେ ନିଜ କୋଦାଳରେ
ନିଜେ ନିଜ ଖୋଳୁଁ ଖଣା ।

( ପ୍ରସ୍ଥାନ )

——o——

## ତୃତୀୟ ଦୃଶ୍ୟ ।

ଅନ୍ତଃପୁରସ୍ଥ କକ୍ଷ ।

( ମଧୁସୂଦନ, ଧନବନ୍ଧୁ, ରତ୍ନାକର ଓ ପ୍ରଭାକରର ପ୍ରବେଶ )

ମଧୁ—ଟଙ୍କା, ଟଙ୍କା, ମୋ ଟଙ୍କା କାହିଁ ଦିଅ ।

ଧନ—ହୁଁ ହୁଁ ବଡ଼ିଛ । ରତ୍ନାକର ଟଙ୍କା ବାହାର କର ।

ମଧୁ—ଟଙ୍କା, ଟଙ୍କା, ପାତଶାହାର ଟଙ୍କା, ମୋ ଟଙ୍କା

ରତ୍ନା—କିଛି ସମ୍ଭବ ନାହିଁ ?

ମଧୁ—ଏକ କଉଡ଼ି କମ୍ ହବନାହିଁ । ମୋ ଟଙ୍କା, ପାତଶାହାର ଟଙ୍କା । ମୋ ଟଙ୍କା, ମୋ ଟଙ୍କା ।

ପ୍ରଭାକର—ପଟନାବାଲେ ଏ ଝଡ଼ାବେପାର କେତେଦିନୁ ଆରମ୍ଭ କଲେଣି ?

ମଧୁ—ଏଁ ଏଁ, ମୋ ଟଙ୍କା, ମୋ ଟଙ୍କା, ମୋ ଟଙ୍କା ଦିଅ ।

ପ୍ରଜାଜର—ତୁମର ଟଙ୍କ‌ଇଟି ପୁଅ ?

ମଧୁ—ମୋର ଧନପୁଅ, ଏଇଟି ବଡ଼ । ମୋ ଟଙ୍କା ଆଣ ।

ପ୍ରଶ୍ନ—ଏଇଟିକି ତ ପାଞ୍ଚହଜାର କଲ, ଆଉଦୋଟି କେତେ କୋଶା ମୂଲ ହେବେ ?

ମଧୁ—ଆରେ ଚନ୍ଦର ! ଚନ୍ଦର ଲୁଅ କେଉଁଠି ଗଲୁ । ମୋ ଟଙ୍କା,ମୋ ଟଙ୍କା, ମୋ ଟଙ୍କା ଆଣ । ( ଭୃତ୍ୟମାନଙ୍କର ଯାଉଥଳୀ ଶପଥାଦ ପ୍ରବେଶ ଏବଂ ଥଳୀ ସ୍ଥାପନପୂର୍ବକ ପ୍ରସ୍ଥାନ )

ରତ୍ନା—ନିଅ ଟଙ୍କା ଗଣ ।

ମଧୁ—( ଥଳୀ ପିଟାଇ ଦେଖି ) ଇଏ କଣ ! ମୋ ଟଙ୍କା,ମୋ ଟଙ୍କା । ଇରେ ଚନ୍ଦର ମୋ ଟଙ୍କା ।

ରତ୍ନା—ସେଇ ତ ଟଙ୍କା । ଲୁଦ୍ଧାରକୁ ବସର ଦିଆଯାଇଥିଲା । ନ ହେଲେ ଏତେ ଟଙ୍କା ଆଉ କୋଉଠୁ ଆସିବ । ନିଅ, ନିଅ, ଗଣ ।

ମଧୁ—ମୋ ଟଙ୍କା, ମୋ ଟଙ୍କା, ଇରେ ଚନ୍ଦର ମୋ ଟଙ୍କା ।

ପ୍ରଶ୍ନ—(ଗୋଟିଏ ଥଳୀଧରି) ଏ ସବୁଗୁଡ଼ିକ ତମଗଳାରେ ଝୁଲାଇ-ବାକୁ ହେବ । ( ଗଳାରେ ବାନ୍ଧିବାର ଉଦ୍ୟମ )

ମଧୁ—ଇରେ ଚନ୍ଦର ! ମୋତେ ଛାଡ଼ ମୋର ଟଙ୍କାର ଦରକାର ନାହିଁ । ରକ୍ଷା କର, ରକ୍ଷା କର ।

ରତ୍ନା—ସେ କଥା ହବ ନାହିଁ । ସବୁ ଗଳାରେ ବନ୍ଧାଯିବ ।

ମଧୁ—ତମ ଗୋଡ଼ତଳେ ପଡ଼ୁଚି, ଆଉ ଟଙ୍କା ଦରକାର ନାହିଁ । ଟଙ୍କା ନେବି ନାହିଁ ।

ପ୍ରଶ୍ନ—ସେ କଥା ନ ପଟେ । ଟଙ୍କା ନବାକୁ ହବ ।

ମଧୁ—ରକ୍ଷା କର, ମୋତେ କ୍ଷମା କର, ମୁଁ ଆଉ ଟଙ୍କା ଖୋଜିବି ନାହିଁ ରେ ଚନ୍ଦର ! ( ରୋଦନ )

ଦାନ—ଛାଡ଼, ଛାଡ଼ । ବୁଢ଼ା ଲୋକ ବ୍ୟସ୍ତ ହେଲେଣି ।

ରତ୍ନା—ଜ୍ଞାନୀ କହନ୍ତି ପୁଅବାକୁ ତେପାର ଅଙ୍ଗଠାରୁ ଗଢ଼ନ୍ତି, ତାହା ଧୋଇଲେ ତାକୁ ଗଢ଼ିବା । ନ ହେଲେ ଏ ପାଞ୍ଚହଜାର ଯାକ ସବୁ ବୃଦ୍ଧାନ୍ତଳରେ ନ ଝୁଲେଇ କାଏ ଛାଡ଼ନ୍ତି ।

ମଧୁ—ଛଢ଼ଲି, ଛଢ଼ଲି, ଏହି ମୁହୂର୍ତ୍ତରୁ ଛଢ଼ଲି । ନାକ ଘଷୁଛି । (ନାସା ଘର୍ଷଣ); କାନ ମୋଡ଼ୁଛି (କାନ ମୋଡ଼ିବା); ଛନ୍ତୁ ଗଢ଼ଲି । ଆଉ କେବେ ଟଙ୍କା ନା ଧରିବି ନାହିଁ । ମୋତେ ରକ୍ଷା କର । ମୁଁ ଯାଏଁ, ମୋତେ ଗଢ଼ିଦିଅ ।

ରତ୍ନା—ତେବେ କଣ ବର ହେବାକୁ ଆଉନ୍ତି ଏଥର !

ମଧୁ—ହଁ ଅସୁ ।

ଧନ—ଗଛ ଛଡ଼ । (ମଧୁସୂଦନଙ୍କ ଗଳାରୁ ଥଳୀ ପିଟାଇ ରଖି) ସମୁଦ୍ର ଏଥର ଅସ, ଆମ ଘର ଦ୍ୱାର ଟିକିଏ ଦେଖିଯିବ । ବୋହୂଟିକୁ ମଧ୍ୟ ଦେଖିଥାଅ । ପଛେ ଆଉ ଭେଟ ହୁଏ ନ ଥିବ । ଟଙ୍କା ଯୋଗୁଁ ତ କିଛି ଦେଖି ନ ଥିଲ, ଏଥର ଦେଖିବ ଚାଲ

(ସମସ୍ତଙ୍କର ପ୍ରସ୍ଥାନ)

—o—

## ୪ର୍ଥ ଦୃଶ୍ୟ ।

ଅନ୍ତଃପୁର ।

(ମଧୁସୂଦନ, ଧନବନ୍ଧୁ ଓ ରତ୍ନାକରଙ୍କର ପ୍ରବେଶ)

ମଧୁ—ମତେ ଛାଡ଼ ମୁଁ ଯାଏଁ । ମୋ ଟଙ୍କା

ରତ୍ନା—ଫେର ଟଙ୍କା, ଅଣେରୁଢରେ ଟଙ୍କା ।

ମଧୁ—ନାହିଁ ନାହିଁ, ଭୁଲିଗଲି । ଗୃପୁଡ଼ା ଖାଉଛି (ଗଣ୍ଡଗାଲରେ ଚପେଟାଘାତ) ଆଉ କେବେ କହିବିନାହିଁ ।

ଧନ—ହଉ ଛଡ଼ । କିଏ ଅଛ, ଝିଅକୁ ଆଣିବଟି । ସମ୍ମୁଖ ତାଙ୍କ ବୋହୂକୁ ଦେଖି ଯାଉଛୁ ।

( ବକ୍ରତମୁଖୀ କନ୍ୟା ସହ ବକ୍ରତମୁଖୀ ରମଣୀମାନଙ୍କର ଦୀର୍ଘ ଅବଗୁଣ୍ଠନରେ ନଇଁ ନଇଁ ପ୍ରବେଶ । ସାନବନ୍ଧୁ ଓ ରତ୍ନାକର-ଙ୍କର ପ୍ରସ୍ଥାନ । ରମଣୀମାନଙ୍କର ଅବଗୁଣ୍ଠନ ମୋଚନ ଓ ମଧୁସୂଦନଙ୍କୁ ଆକ୍ରମଣ । ମଧୁସୂଦନଙ୍କର ଦୀର୍ଘ ଚିତ୍କାର )

ଗୀତ ।

ହାଉଁ ମାଉଁ ହାଉଁ ମାଉଁ ଖାଉଁ ଖାଉଁ ଗାଉଁ
କାହିଁ ନ ଶୁଝୁଁ ।

ପୁଅ ବକା ମୁଣ୍ଡ ଖାଉଁ ଗାଉଁ ଗାଉଁ ଗାଉଁ
ଝୁଅ ଢକାଙ୍କୁ ଗିଳିଯାଉଁ, ଅଉଁ ଝଉଁ ଅଉଁ ।

( ପଟକ୍ଷେପ )



# ତୃତୀୟ ଅଭିନୟ ।

## ୧ମ ଦୃଶ୍ୟ ।

ନିର୍ମଳାବାଳାଙ୍କ ବୈଠକ ଖାନା ।

( ବାଳିକାଗଣ ପ୍ରବେଶ )

ଗୀତ ।

ନ ଖୋଜିବା ଆଉ ନର ଲୋ ସଜନ
ନ ଖୋଜିବା ଆଉ ନର ।
'ନରଜାତ ଅମ୍ଭ ପରମ ଅହିତ
ନରଜାତ ଅମ୍ଭ ପର ।
ଧର ସାରିଲୁଣି ସବୁ ଲଗାମ
ଯେତେ ଯାକ ନରଙ୍କର ।
ନର କି କରନ୍ତି ନାଶ ନ ପାରନ୍ତି
କପାଇଁ ନରଙ୍କୁ ଡର ।
ନିଜ ନିଜ ଘର କରିବା ଅମର
ନିଜେ ନିଜେ ହେବା ବର ।
ନିଜ କାରବାର ନିଜେ କରି ନେବା
ଏଣିକି ଏବେ ଏଥର ।
( ବାଳିକାମାନଙ୍କର ପ୍ରସ୍ଥାନ

ନିର୍ମଳାବାଳା, ପ୍ରମୀଳା, ଶଶିକଳା, ଚାରୁଶୀଳା ଓ ବସନ୍ତ-ବାଳାଙ୍କର ପ୍ରବେଶ ଓ ଯଥା ସ୍ଥାନେ ଉପବେଶନ । )

ପ୍ରମୀଳା—ନିର୍ମଳାବାଳା ଅମ୍ଭମାନଙ୍କର ବହୁକାଳର ବନ୍ଧୁ । ସେ ବିବାହ ହୋଇ ଅମ୍ଭମାନଙ୍କ ସଙ୍ଗରୁ ଚାଲି ଯାଉଅଛନ୍ତି । ( ନିର୍ମଳା ପ୍ରତି ) ନିର୍ମଳା, ତୁମ୍ଭେ ଯାଉଅଛ । ମୋର ତୁମ୍ଭଙ୍କୁ

ଏତିକି ମାତ୍ର ଅନୁରୋଧ, ତୁମ୍ଭେ ଯେପରି ନାରୀର ସମ୍ମାନ କେବେ ବିସ୍ମୃତ ନ ହୁଅ । ନରଠାରୁ ନାରୀ କୌଣସି ଗୁଣରେ ନ୍ୟୂନ ନୁହେଁ । ନରର ଗୋଟାଏ ବୃଥା ଅହଂକାର ଅଛି ଯେ ସେ ନାରୀଠାରୁ ଶ୍ରେଷ୍ଠ । ନରଜାତିର ସେ ଅହଂକାର ଚୂର୍ଣ୍ଣ କରିବା କାରଣ ତୁମ୍ଭେ ସଦା ସର୍ବଦା ଯତ୍ନ କରିବ ।

ଶଶିକଳା—ନିର୍ମଳା ଅମ୍ଭମାନଙ୍କର ଜଣେ ପ୍ରଧାନ ନେତ୍ରୀ । ନିର୍ମଳା ଯଥା କାର୍ଯ୍ୟରେ ତଥା ବାକ୍ୟରେ ସର୍ବଦା ନାରୀଜାତିର ମର୍ଯ୍ୟାଦା ବଜାଏ ରଖି ଅମ୍ଭମାନଙ୍କର ସ୍ନେହ ଓ ଭକ୍ତି ଉପାର୍ଜନ କରିଅଛନ୍ତି । ଆଜି ବିବାହ କରୁଅଛନ୍ତି ବୋଲି କଦାଚ ସେ ମର୍ଯ୍ୟାଦା ସେ ବିସ୍ମୃତ ହେବେ ନାହିଁ । ପୁରୁଷ-ଜାତିର ଅମ୍ଭମାନଙ୍କ ସହିତ ବ୍ୟବହାର ଅତ୍ୟନ୍ତ ଘୃଣା-ଜନକ, ବିଶେଷ କଦର୍ଯ୍ୟ, ବିଶେଷ ନିନ୍ଦନୀୟ । ପୁରୁଷ-ଜାତିକୁ ଦମନ କରିବା ପ୍ରତ୍ୟେକ ନାରୀର ପ୍ରଧାନ କର୍ତ୍ତବ୍ୟ । ନିର୍ମଳା ନିଜେ ଏହି ମତ ବରାବର ପ୍ରଚାର କରିଅଛନ୍ତି । ସେ କଦାଚ ସେ ମତ ବିସ୍ମୃତ ହେବେ ନାହିଁ ।

ବସନ୍ତବାଳା—ନିର୍ମଳା ଆଜି ଏକଜଣ ପୁରୁଷକୁ ବିବାହ କରୁଅଛନ୍ତି ବୋଲି ଯେ ନାରୀ ଜାତିର ମର୍ଯ୍ୟାଦା ଭୁଲିଯିବେ ଏହା କଦାପି ହୋଇ ନପାରେ; ମୋହର ବିଶ୍ୱାସ ନାରୀର ପୁରୁଷ ସହିତ ବିବାହ ଏହି ଶେଷ । ଏହା ପରେ ଆଉ ଯେପରି ପୁରୁଷ ସହିତ ନାରୀର ବିବାହ ନହେଉ । ପୁରୁଷ ଜାତି ଅପେକ୍ଷା ଅମ୍ଭେମାନେ କୌଣସି ଗୁଣରେ ନ୍ୟୂନ ନୋହୁଁ । ଜଗତରେ ଏପରି କାର୍ଯ୍ୟ ନାହିଁ ଯାହା ପୁରୁଷମାନେ କରିବାକୁ ସକ୍ଷମ ମାତ୍ର ନାରୀମାନେ କରିବାକୁ ଅକ୍ଷମ । ମୋହର ବିବେଚନାରେ ଆଉ ପୁରୁଷମାନଙ୍କୁ ଅମ୍ଭେମାନେ ବିବାହ ନ କରି ନିଜ ନିଜ ମଧ୍ୟରେ ବିବାହ କାର୍ଯ୍ୟ ସାଧନ କରିବାକୁ ହେବ

ପୁରୁଷର ବିନା ସାହାଯ୍ୟରେ ସଂସାର କାର୍ଯ୍ୟ ଚଳାଇ ପାରିବାକୁ ହେବ ।

ଗୁରୁଣୀଳା — ପୁରୁଷଜାତିର ମୂଳ ଉତ୍ପାଟନ କରିବାକୁ ହେବ । ନାରୀର ବିବାହ ନାରୀ ସହିତ ହେବ ଓ ମଧ୍ୟ ପୁରୁଷ ପ୍ରଥା ବନ୍ଦକରି କେବଳ ନାରୀ ପ୍ରଥା କରିବାକୁ ହେବ ।

ଜଗତ ନାରୀମୟ ହୋଇଯିବ । ପୁରୁଷ ଜାତି ଧ୍ୱଂସ ହୋଇଯିବ ! କେବଳ ନାରୀ ରାଜତ୍ୱ କରିବ ।

( ବାଳିକାମାନଙ୍କର ପ୍ରବେଶ )

ଗୀତ ।

ନ୍ୟାଯ୍ୟ ତନ୍ତ୍ର   ନ୍ୟାଯ୍ୟ ତନ୍ତ୍ର
ରାଜ୍ୟ କରିବେ ନାରୀ ।
ଧାର୍ଯ୍ୟ କରିବା   ଅର୍ଯ୍ୟ-ଭୂମାରୀ
ଈର୍ଯ୍ୟା ନ ହେବେ କାହାରି ।
ଅସ୍ତ୍ର ଧରିବା   ସମର କ୍ଷେତ୍ରେ
ବସ୍ତ୍ର ନ ଢାଙ୍କି   ଏଥର ଗାତ୍ରେ
ବେତ୍ର ମାରିବା   ପୁରୁଷ ଗାତ୍ରେ
ପୁରୁଷ ଯଦ କାରି
ପୁରୁଷ ଯଦ କାରି
ପୁରୁଷ ଯଦ କାରି
ପୁରୁଷ ହୋଇବେ   ରମଣୀ-ଭକ୍ତ
ରମଣୀ ଶୋଷିବେ   ପୁରୁଷ ରକ୍ତ
ଧରିବା କଲମ   ଧରିବା କଲମ
ଶକ୍ତ ହୁକୁମ ଜାରି ।
ଶକ୍ତ ହୁକୁମ ଜାରି ।
ଶକ୍ତ ହୁକୁମ ଜାରି ।

—o✱o—

## ୨ୟ ଦୃଶ୍ୟ ।

ରାଜପଥ ।

( ମଧୁସୂଦନ, ଚନ୍ଦର ଓ ଗୁରୁଚରଣ ପ୍ରବେଶ )

ମଧୁ—କେତେଦୂର, ଆଉ କେତେଦୂର ।

ଗୁରୁ—ନାହିଁ ଆଉ ବେଶି ଦୂର ନୁହେଁ, ଆସି ପହଞ୍ଚିଲେଣି ।

ମଧୁ—ଯାହାହେଉ ବାପ ମୁଁ ତତେ କୋଟି କଲ୍ୟାଣ କରୁଚି । ତୁ ମୋତେ ବହୁତ ଲଜ୍ଜାରୁ ରକ୍ଷାକଲୁ । ମୋ ମୁହଁ ପୋଡ଼ି ଯାଇଥିଲା । ମୁଣ୍ଡ ଟେକି ପାରି ନ ଥାନ୍ତି । ବାହା ବାହା । ବୋହୂଟି କେମିତିକା ?

ଗୁରୁ—ବୋହୂଟି ଭଲ । ଆପଣ ଚାଲନ୍ତୁ ଦେଖିବେ ।

ମଧୁ—ଅଉ ଟଙ୍କା ( ଚଦରକୁ ଦେଖାଇ କରି ) ଗଲେ ନାହିଁ ନାହିଁ, ଖାଇଗଲେ ଖାଇଗଲେ । ଆଉ କହିବି ନାହିଁ, କେବେ କହିବି ନାହିଁ । ମା ମା ମୋତେ ରକ୍ଷାକର, ରକ୍ଷାକର । ଆଉ କେବେ ଟଙ୍କା ନାଁ ଧରିବିନାହିଁ ।

ଗୁରୁ—ଟଙ୍କା କଥା ଛାଡ଼ନ୍ତୁ । ପୁଅ ବିବାହ କରି ବୋହୂଟିକୁ ଘରକୁ ଆଣନ୍ତୁ । ବୋହୂଟି ମନ ମୁତାବକ ହେଲେ ସବୁ ସୁଖର କଥା ହେବ ।

ମଧୁ—ବୋହୂଟି ଭଲ, ନା ? ହଉ ହଉ । ଚାଲ ବାପ ଚାଲ । ଚନ୍ଦର ! ଉଠରେ ଚନ୍ଦର ।

ଚନ୍ଦ୍ର—ଆଜ୍ଞା ।

ମଧୁ—ସେ ସେ ସେ ସମର୍ପଣିଆ ଯୋତୁକଟା ଆଣିଚୁଟି ?

ଚନ୍ଦ୍ର—ଆଜ୍ଞା ହଁ ଆଣିଚି !

ମଧୁ—ହସ୍ତଗଣ୍ଠି ପିଟା ଶାଢ଼ୀଖଣ୍ଡ ?

ଚନ୍ଦ୍ର—ଆଣିଚି ଆଣିଚି ।

ମଧୁ—ଆଉ—ମୋ ମୋ ମୋ ମୋଲକି ମଠା ଯୋଡ଼େ ?

ଚନ୍ଦ୍ର—ସାଆନ୍ତେ ସବୁ ଆଣିଚି ଚାଲନ୍ତୁ ।

ମଧୁ—ହଉ ହଉ ଥ ଥ ଥ ।

( ସମସ୍ତଙ୍କର ପ୍ରସ୍ଥାନ )

## ୩ୟ ଦୃଶ୍ୟ ।

### ପ୍ରାଙ୍ଗଣ ।

( ସୁଧୀର ପ୍ରବେଶ )

ସୁଧୀ—ସୁଧୀ ଗୋଟେଇଁ ଖାଇ ଏକା ଧନ ଭୁଲରୁ ବାହାର । କାହିଁ କମ ! କୋଉ କଥାକୁ ! ମୁଁ ଅଉ କଣ ମାଇକିନିଆ ନୁହେ ନା କଣ ! ସମସ୍ତେ ଜାମା ପିନ୍ଧିଲ, ଯୋତା ମାଡ଼ିଲ, ଘୋଡ଼ା ଚଢ଼ିଲ । ସୁଧୀ ଗୋଟେଇଁ ଖାଇ କପାଳରେ ଯୋଉ ପଢ଼ିବାକୁ ସେଇ ପଢ଼ିବା । କିଅଁ ! ମନ୍ତ୍ରେ କଣ ପାଠ ପଢ଼ି ଅସିବ ନାହିଁ ନା ନାଟ କରି ଆସିବ ନାହିଁ ମ । ହଉ ହଉ ଯାଉ ବାହାଘରଟା । ଯାଉ । ତେବେ ଯାଇ କଥା ବାରତା । ଏଇଖିଣି କିଛୁ କହୁ ନାହିଁ ପରା, ଦାନ୍ତ କାମୁଡ଼ି ରହିଛି । ବାହାଘର ଗଲେ ସବୁ କଥା ।

ଗୀତ ।

ନାହିଁ ନାହିଁ ନାହିଁ ନାହିଁ　　ନ ଯିବି ପଢ଼ିବା ।
ପାଠ ପଢ଼ିଲ　ସବୁ ଛାଡ଼ିଲ
ମୁ କାହିଁକି　ଆଉ ଏଣିକି
ଅ ଆ ଅ ଆ　ଏପରି
କଣ୍ଠ ପଖାଳୁ　ମରେଁ ଛାଡ଼ି ଅଇଲା ।
(ଏବେ) ଛାଡ଼ିଲୁ　ନଇଭାତ ସବୁ ମଲା ।

( ପ୍ରସ୍ଥାନ )

---

## ୪ର୍ଥ ଦୃଶ୍ୟ ।

### ବିବାହ ମଣ୍ଡପ ।

( ପଦ୍ମନାଭ ଓ ନିର୍ମଳାବାଳା ବର କନ୍ୟା ବେଶରେ ଏବଂ ଅନ୍ୟାନ୍ୟ ସ୍ତ୍ରୀ ଓ ପୁରୁଷ, ବନ୍ଧୁ ବାନ୍ଧବଗଣ ଯଥା ଯଥା ସ୍ଥାନରେ ଉପବିଷ୍ଟ ଓ ଦଣ୍ଡାୟମାନ, ମଧୁସୂଦନ ଓ ଚନ୍ଦ୍ରମଣିର ପ୍ରବେଶ )

ମଧୁ—( ଅଶ୍ରୁପୂର୍ଣ୍ଣ ସ୍ୱରେ ଚତୁର୍ଦ୍ଦିଗକୁ ଦୃଷ୍ଟି ନିକ୍ଷେପ ) କରେ ଚନ୍ଦର ! ଚନ୍ଦର ! କରେ ଏଏ କଣ ! ଏଏ କଣ ରେ ଚନ୍ଦର ! ମୋତେ ତୁ କୋଉଠିକି ଆଣିଲୁ ରେ ଚନ୍ଦର ! ମୁଁ କୋଉଠି ଆସି ପଡ଼ିଗଲି ରେ ଚନ୍ଦର । ଚନ୍ଦର ! ଚନ୍ଦର !

ଚନ୍ଦ୍ର—ଆଜ୍ଞା ।
ମଧୁ—ଚନ୍ଦର ।
ଚନ୍ଦ୍ର—ଆଜ୍ଞା ।
ମଧୁ—ଚନ୍ଦର ।
ଚନ୍ଦ୍ର—ଆଜ୍ଞା ।

ମଧୁ—ଏବେ ମୋତେ ତୁ କୋଉଠିକି ଆଣିଲୁ ରେ ଚନ୍ଦର । ମୋତେ ତୁ କଣ କଲୁ ରେ ଚନ୍ଦର ! ପଦଆକୁ ଫେର ଯୋଗନା ଗିରାଇଲୁ ରେ ଚନ୍ଦର । ଏବେ ପଦଆ ତୁ କଣ କଲୁ ରେ ପଦଆ ! (ରୋଦନ) ଏବେ ପଦଆ, ଏବେ ପଦଆ, ଏବେ ସେଇଠା କଣ ଖାଇ ନା ଅଣ୍ଡିର ରେ ପଦଆ । ତୁ କଣ କଲୁ ରେ ପଦଆ ( ରୋଦନ )

ବରକନ୍ୟା ଛଡ଼ା ଅନ୍ୟ ସମସ୍ତେ—ଅସଭ୍ୟ, ବର୍ବର, ମୂର୍ଖ, ଦୂର ହୁଅ ଏଠାରୁ ।

ମଧୁ—(ରୋଦନ କରି କରି) ଏବେ ପଦଆ ତୁ ମୋ କୁଳ ବୁଡ଼ାଇଲୁ ରେ ପଦଆ । ତୋ ହାତରୁ ପିଣ୍ଡ ମୁଠା ପାଇବି ବୋଲି କେତେ ଆଶା କରିଥିଲି ରେ ପଦଆ । ତୁ ମୋ କପାଳ ବୁଡ଼େଇଲୁ ରେ ପଦଆ, ତୁ କଣ କଲୁ ରେ ପଦଆ । ଏ ଡାକୁଣୀକି କାହିଁକି ଛାଡ଼ିଦେଲୁ ରେ ପଦଆ (ରୋଦନ)

ବରକନ୍ୟା ଛଡ଼ା ଅନ୍ୟ ସମସ୍ତେ—ଅସଭ୍ୟ, ବର୍ବର, ପଶୁ ( ଉତ୍ଥାନ ଓ ମଧୁସୂଦନଙ୍କୁ ଆକ୍ରମଣର ଉଦ୍ୟମ )

ମଧୁ—ଚନ୍ଦର ! ଚନ୍ଦର (ଦୀର୍ଘ ଚିତ୍କାର)

ପଟକ୍ଷେପ ।

Printed by H. K. Das. Chandrodaya Press, Cuttack.

ଶ୍ରୀଯୁକ୍ତ ଭଗବତଚରଣ ପଟ୍ଟନାୟକଙ୍କ ପ୍ରଣୀତ

## ପୁସ୍ତକାବଳୀ ।

| | | |
|---|---|---|
| ସୁଶୀଳା | ନାଟକ | ଟ ୦ ୫ |
| ରକ୍ତମାଳ | ,, | ଟ ୦ ୫୵ |
| ସଂସାର ଚକ୍ର | ,, | ଟ ୦ ୫ |
| ନନ୍ଦକେଶରୀ | ,, | ଟ ୦ ।୵ |
| କଟକ ବିଜୟ | ,, | ଟ ୦ ୫ |
| ଅଦ୍ଭୁତ ଆଦର୍ଶ (ପ୍ରହସନ) | | ଟ ୦ ୵ |
| ଯୌତୁକ | ,, | ଟ ୦ ୷ |
| ଗୀତ ଲହରୀ | | ଟ ୦ ୫୵ |
| ଶ୍ୟାମ ଦାସ | | ଟ ୦ / |
| ଭରଣ ପାସନ୍ତ ତମ | | ଟ ୦ / |
| ପାନ୍ତଅ ବାନ୍ଧା | | ଟ ୦ / |
| ମାନ୍ୟବର | | ଟ ୦ ‹୬ |
| ନୂଆଯୋଗୀ | | ଟ ୦ ‹୬ |
| ସେଠ ସୁନାରୀ | | ଟ ୦ ‹୩ |
| ସେଠ ଭିକାରୀ | | ଟ ୦ ‹୬ |
| ନେତା | | ଟ ୦ / |

ଉପରୋକ୍ତ ପୁସ୍ତକମାନ କଟକର ସମସ୍ତ ପୁସ୍ତକାଳୟମାନଙ୍କରେ ଉଲ୍ଲିଖିତ ସ୍ଥାନରେ ମିଳେ ।

ପ୍ରାପ୍ତିସ୍ଥାନ—ଶ୍ରୀହରେକୃଷ୍ଣ ଦାସ,
ଚନ୍ଦ୍ରୋଦୟ ପ୍ରେସ୍ ଓ ଚନ୍ଦ୍ରୋଦୟ ପୁସ୍ତକାଳୟ,
ସା: ବାଲୁବଜାର, ପୋ: ଅ: ଚାନ୍ଦନୀଚଉକ—କଟକ ।